# ଫ୍ୟାରେକ୍ସ® ପ୍ରଥମ ପସନ୍ଦ !

## ନୂଆ ଉନ୍ନତ ଫ୍ୟାରେକ୍ସ®
## ଆପଣଙ୍କ ଶିଶୁ ପାଇଁ ଘନ ଖାଦ୍ୟର ଆଦର୍ଶ ଆରମ୍ଭ
## କାରଣ ଶିଶୁର ବିକାଶ ପାଇଁ ଏଥିରେ ଅଛି ଉପଯୋଗୀ ଉପାଦାନ !

ଫ୍ୟାରେକ୍ସରେ ଭରପୁର ପ୍ରୋଟିନ ଓ ଉପଯୁକ୍ତ ପରିମାଣରେ ସ୍ନେହସାର ଅଛି ଯାହା ଶିଶୁକୁ ସୁସ୍ଥ ସବଳ କରି ଗଢ଼େ । ଶିଶୁର କୋମଳ ହଜମ ପାଇଁ ଏହା ଉପଯୋଗୀ ।

ଫ୍ୟାରେକ୍ସରେ ଥିବା ଲୌହସାର ଶିଶୁର ରକ୍ତ ସୁସ୍ଥ ରଖେ ଓ ରୋଗ ପ୍ରତିରୋଧକ ଶକ୍ତି ଗଢ଼େ ।

ଫ୍ୟାରେକ୍ସରେ ଥିବା ୨:୧ ଆଦର୍ଶ ଅନୁପାତର କ୍ୟାଲସିୟମ ଫସଫରସ, ଶିଶୁର ଦାନ୍ତ ଓ ହାଡ଼କୁ ସୁସ୍ଥ ରଖେ ।

ପୁଷ୍ଟିଗୁଣରେ ପରିପୂର୍ଣ୍ଣ ଫ୍ୟାରେକ୍ସ ବର୍ତ୍ତମାନ ଆହୁରି ଅଧିକ ସୁସ୍ୱାଦୁ । ମିଶାଇବା ବି ଆହୁରି ସହଜ ।




ଦୁଧ ମିଶାଇବାର ଦରକାର ନାହିଁ!
କେବଳ ପାଣି ମିଶାଇ ଖୁଆନ୍ତୁ

ନୂଆ ଉନ୍ନତ ଫ୍ୟାରେକ୍ସ®

CLARION/B/GX/15/183/ORI



# ଜହ୍ନମାମୁଁ

ଅକ୍ଟୋବର ୧୯୮୬



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦

ସୌରଭ ମନମୁଗ୍ଧକାରୀ
ସଦ୍ୟତା ତନୁ ଆବୋରି

ନୂଆ
ପ୍ରେମ୍
ସ୍ୱାଭାବିକ ରୂପେ ଆପଣଙ୍କର




ଏବେ ଏକ ସୁବିଧାଜନକ ଆକାର ଆଉ ନୂଆ ସୌରଭରେ ମିଳୁଛି

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

ସମାଜରେ ଏପରି ଅନେକ ଲୋକ ଥାନ୍ତି, ଯେଉଁମାନେ ବାସ୍ତବିକ ନିର୍ଲୋଭୀ ଓ ସରଳ । ସେମାନଙ୍କ କାର୍ଯ୍ୟକଳାପକୁ ଅନ୍ୟମାନେ ବୋକାମୀ ବୋଲି କହି ପାରନ୍ତି, କିନ୍ତୁ ସେଭଳି ଲୋକେ ନିଜ ମହତ୍ତ୍ୱରେ ନିଜେ ଗରୀୟାନ୍ ହୋଇ ରହନ୍ତି । ଅତଏବ ଆମ୍ଭେମାନେ କେବଳ ବାହାରର ରୂପ ଦେଖି ଭୁଲିଯିବୁ ନାହିଁ । "ଶମ୍ଭୁର ନଗର ଯାତ୍ରା" ସେହିଭଳି ଏକ ଚରିତ୍ରର କାହାଣୀ ।

## ଅମରବାଣୀ

ଉତ୍ତମଃ କ୍ଲେଶବିକ୍ଷୋଭମ୍, କ୍ଷମଃ ଶୋଢୁଂ ନ ହୀତରଃ ।
ମଣିରେବ ମହାପାଣଘର୍ଷଣଂ ନ ତୁ ମୃତ୍କଣଃ ॥

[ଉତ୍ତମ ମଣିଷ ପାଖରେହିଁ ଦୁଃଖ କ୍ଲେଶ ଓ କ୍ଷତ ସହିବାର କ୍ଷମତା ଥାଏ, ସାଧାରଣ ମଣିଷ ପାଖରେ ନୁହେଁ । ମଣି ଉପରେ ଶାଣ ଦେଲେ ସିଏ ସହିପାରେ, ମାଟି ସହିପାରେ ନାହିଁ ।]




ବର୍ଷ : ୨୧     ଅକ୍ଟୋବର ୧୯୮୭     ଅଙ୍କ : ୪

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

# ଆପଣଙ୍କ ଶିଶୁକୁ ଦିଅନ୍ତୁ,
# ସେରେଲାକ୍‌ର ଅଦ୍ୱିତୀୟ ଲାଭ



## ବହଳିଆ ଘନ ଆହାର ରୂପେ ଏଯେ ଆଦର୍ଶ ଆରମ୍ଭ !

ଆପଣଙ୍କ ଶିଶୁଟି ପ୍ରାୟ ୪ ମାସର ହୋଇଗଲେ, ତା'ପାଇଁ ଦରକାର ଦୁଗ୍ଧ, ଦୁଧ ସଙ୍ଗେ ସଙ୍ଗେ ବହଳିଆ ଘନ ଆହାର । ତାକୁ ସେରେଲାକର ଅଦ୍ୱିତୀୟ ଲାଭ ମିଳିବାର ଏ ହେଉଛି ଉପଯୁକ୍ତ ସମୟ ।

**ପୁଷ୍ଟି ସାଧନର ଲାଭ :**
ସେରେଲାକର ପ୍ରତ୍ୟେକ ଆହାର, ଆପଣଙ୍କ ଶିଶୁ ଦରକାର କରୁଥିବା ସମସ୍ତ ପୁଷ୍ଟିକାରୀ ଗୁଣ ଯୋଗାଇଥାଏ, ଯଥା—ସ୍ନେହସାର, ଶ୍ୱେତସାର, ଫ୍ୟାଟ୍, ଭିଟାମିନସ୍ ତଥା ଖଣିଜସାର । ଶିଶୁର ବିଶେଷ ଆବଶ୍ୟକତା ଅନୁଯାୟୀ ସେରେଲାକରେ ସବୁ କିଛି ପୋଷଣକ୍ଷମ ଗୁଣ ସୁଷମଭାବେ ତଥା ସଠିକ ଆକାରରେ ରହିଛି ।

**ଆସ୍ୱାଦ ଲାଭ :**
ସେରେଲାକ୍ ଅଧିକ ପୁଷ୍ଟିକର ହେବା ସଙ୍ଗେ ସଙ୍ଗେ ବଢ଼ିଆ ରୁଚିକର ମଧ୍ୟ । ଏହାର ଅପୂର୍ବ ସ୍ୱାଦ ଶିଶୁମାନଙ୍କୁ ବହୁତ ଭଲ ଲାଗେ ।

**ସମୟ ବଞ୍ଚାଇବାର ଲାଭ :**
ସେରେଲାକ୍ ଆଗରୁ ହିଁ ପାକଭର ହୋଇ ସାରିଛି ଏବଂ ଏଥିରେ ଦୁଧ ଓ ଚିନି ମହଜୁଦ ରହିଛି । ଏହାକୁ ଆଗରୁ ଫୁଟା ପାଉଥିବା ଉଷୁମ ପାଣିରେ ମିଶାନ୍ତୁ, ଦେଖିବେ, ଅବିଳମ୍ବେ ଶିଶୁ ପାଇଁ ଆହାର ପ୍ରସ୍ତୁତ ହୋଇଗଲେ ।

**ପସନ୍ଦ ଲାଭ :**
ଆହାର ସମୟକୁ ଅଧିକ ସୁଖକର କରିବାକୁ, ବର୍ତ୍ତମାନ ପସନ୍ଦ ପାଇଁ ଦୁଇ ପ୍ରକାର ସେରେଲାକ ରହିଛି । ୪ ମାସରୁ ଶିଶୁକୁ ସେରେଲାକ ହୁଇଟ୍ ଏବଂ ୬ ମାସରୁ ସେଥିକି ନୂଆ ସେରେଲାକ୍ ୟାପଲ୍ ଖୁଆନ୍ତୁ ।

ଦୟାକରି ଡବା ଉପରେ ଲେଖାଥିବା ନିର୍ଦ୍ଦେଶାବଳୀକୁ ଯତ୍ନ ସହକାରେ ପାଳନ କରନ୍ତୁ, ଯାହା ଫଳରେ କି ଏହି ଶିଶୁଖାଦ୍ୟ ପ୍ରସ୍ତୁତ କରିବାର ଶୁଦ୍ଧତା ରହିବ ଏବଂ ଆପଣଙ୍କ ଶିଶୁକୁ ମିଳିବ,— ସ୍ୱାସ୍ଥ୍ୟ ଓ ସୁଷମ ପୁଷ୍ଟିକର ଆହାର ।

ଖାଦ୍ୟ ଖୁଆଇବାର ଏକ ଆକର୍ଷକ ଡାବିଆ




ସେରେଲାକ୍‌ର ପ୍ରତ୍ୟେକ ଡବା ସହିତ

**ତତ୍ପର ହୁଅନ୍ତୁ ! ଷ୍ଟକ୍ ସୀମିତ ଅଟେ**

ବେବଳ ପ୍ରମୋସନର ପ୍ୟାକେଟ୍ ସହିତ ଉହାକ ମିଳଥାଏ








Nestlé

## ସେରେଲାକ୍‌ର ପ୍ରତିଶ୍ରୁତି : ସ୍ୱାଦ ଯୁକ୍ତ-ସମ୍ପୂର୍ଣ୍ଣ ପୁଷ୍ଟି ସାଧନ ।

# ଜହ୍ନମାମୁଁ ସମ୍ବାଦ-ଝଲକ



## ଉଡନ୍ତା ରେଳଗାଡ଼ି !

ଜାପାନରେ ଶୀଘ୍ର ଉଡ଼ନ୍ତା ରେଳଗାଡ଼ି ପ୍ରବର୍ତ୍ତିତ ହେବାର ଯୋଜନା ହେଉଛି । ଅବଶ୍ୟ ସେମାନଙ୍କର ଡେଣା ନଥିବ । ଚୁମ୍ବକ ଶକ୍ତି ଦ୍ୱାରା ସେମାନଙ୍କୁ ଆକୃଷ୍ଟ କରାଯିବ ।

## ଛଅହଜାର ବର୍ଷ ତଳର ଲଙ୍ଗର

ମାନାର ଉପସାଗର ନିକଟରେ ତାମିଲ ବିଶ୍ୱବିଦ୍ୟାଳୟର ସାମୁଦ୍ରିକ ଗବେଷଣା ବିଭାଗର ଅଧ୍ୟାପକ ଓ ଛାତ୍ରମାନେ ଛଅ ହଜାର ବର୍ଷ ତଳେ ବ୍ୟବହାର ହେଉଥିବା ଗୋଟିଏ ଲଙ୍ଗର ପାଇଛନ୍ତି । ତାହାର ଓଜନ ଏକ ଟନ୍ ।





## ଉଡନ୍ତା ଥାଳିଆ

ଚୀନ୍‌ର କେନ୍ଦ୍ର ଭାଗରେ ଅବସ୍ଥିତ ଚୁଆଲ୍ ପ୍ରଦେଶର କୋଡ଼ିଏ ଜଣ ସରକାରୀ ଲୋକ ଏକ ସମୟରେ କମଳା ରଙ୍ଗର ଉଡ଼ନ୍ତା ଥାଳିଆ ଦେଖିଛନ୍ତି । ଚାଳିଶ ମିନିଟ ଧରି ଥାଳିଆଟି ଉଡିବାର ସେମାନେ ଦେଖିଥିଲେ ।

## ସେଦିନର ସୁବର୍ଣ୍ଣ

ତିରୁପତି ନିକଟବର୍ତ୍ତୀ ଚନ୍ଦ୍ରଗିରି ଦୁର୍ଗ ନିକଟରେ ମାଟି ଖୋଳୁଥିବା ବାର ବର୍ଷର ପିଲାଟିଏ ହାଣ୍ଡିଏ ସୁନା ପାଇଛି । ତାହା ବିଜୟନଗର ସାମ୍ରାଜ୍ୟ ଯୁଗର ବୋଲି ଜଣା ପଡୁଛି । ପିଲାଟି ସୁନା ପାଇବା ମାତ୍ରେ ପୋଲିସ୍‌ରେ ଖବର ଦେଇଥିଲା ।



# କଣ୍ଡୁ

ଋଷି କଣ୍ୱଙ୍କ ପୁତ୍ର ହେଲେ କଣ୍ଡୁ । ଗୋମତୀ ନଦୀ କୂଳରେ ଏକ ନିର୍ଜନ ସ୍ଥାନରେ ସେ ବସି ତପସ୍ୟା କରୁଥାନ୍ତି ।

ମଜା ଦେଖିବା ନିମନ୍ତେ ଇନ୍ଦ୍ର ଜଣେ ଅପ୍ସରା ପଠାଇଦେଲେ । ଅପ୍ସରା କଣ୍ଡୁଙ୍କ ତପସ୍ୟା ସ୍ଥାନରେ ବୁଲିବୁଲି କିଛି ସମୟ ପରେ ତାଙ୍କ ଦୃଷ୍ଟି ଆକର୍ଷଣ କଲେ ।

କିନ୍ତୁ ଅପ୍ସରାଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କୁ ବିବାହ କଲେ । ଦିନ ବିତିଗଲା । ଅପ୍ସରାଙ୍କ ସାହଚର୍ଯ୍ୟରେ କଣ୍ଡୁ ତାଙ୍କ ଧ୍ୟାନ ତପସ୍ୟା ସବୁ ଭୁଲି ଯାଇଥିଲେ ।

ଦିନେ ସନ୍ଧ୍ୟାବେଳେ କଣ୍ଡୁ ଖଣ୍ଡିଏ ପଥର ଉପରେ ଏକାକୀ ବସିଥାନ୍ତି । ଚତୁର୍ଦ୍ଦିଗରେ ଶାନ୍ତି ବିରାଜମାନ କରୁଥାଏ । ହଠାତ୍ ତାଙ୍କର ମନେ ପଡ଼ିଲା, ବର୍ତ୍ତମାନ ଧ୍ୟାନରେ ବସିବା ସମୟ । ସେ ହରିଣ ଛାଲଟି ଖୋଜିଲେ ।

ଧ୍ୟାନରେ ବସିବା ନିମନ୍ତେ ସେ ହରିଣ ଛାଲ ଖୋଜୁଛନ୍ତି ଦେଖି ଅପ୍ସରା ହସିଲେ । କିନ୍ତୁ ଆଶ୍ଚର୍ଯ୍ୟ ହେବାରୁ ସେ କହିଲେ, "ତୁମେ ଏତେଦିନ ପରେ ହଠାତ୍ ଧ୍ୟାନ ମନେ ପକାଇଲ ? ଇତିମଧ୍ୟରେ ନଅଶହ ବର୍ଷ ଛଅମାସ ତିନି ଦିନ ବିତିଗଲାଣି ।"

"କ'ଣ ହେଲା, ନଅଶହ ବର୍ଷ ? ମୁଁ ଭାବିଥିଲି ମାତ୍ର ଦିନଟିଏ ଯାଇଛି ! କଣ୍ଡୁ କହିଲେ ।

ଅପ୍ସରା ପୁଣି ହସିଲେ ।

"ବହୁତ ହେଲା । ଏଣିକି ମୋତେ ମୋ ତପସ୍ୟାରୁ କେହି ଟଳାଇ ପାରିବେ ନାହିଁ ।" ଏହା କହି କଣ୍ଡୁ ପୁଣି ତାଙ୍କ ପୂର୍ବ ଜୀବନ-ଧାରାକୁ ଫେରିଗଲେ ।





# ଶମ୍ଭୁର ନଗର ଯାତ୍ରା

ଅନେକ ଦିନ ତଳର କଥା । ଚମ୍ପକ ରାଜ୍ୟରେ ଗୋଟିଏ ଗାଁରେ ଜଣେ ଗରିବ ଲୋକ ଥାଏ । ନାମ ଶମ୍ଭୁ । ସେ ବହୁତ ପରିଶ୍ରମ କରୁଥାଏ ଓ ତାହା ଦ୍ୱାରା ଯାହା ଯେତିକି ରୋଜଗାର କରୁଥାଏ, ସେଥିରେ କୌଣସି ମତେ ଚଳି ଯାଉଥାଏ ।

ତା' ଘରକୁ ଲାଗି ଜଣେ ଶିଳ୍ପୀଙ୍କ ଘର । ଶିଳ୍ପୀ ମଧ୍ୟ ଗରିବ । କିନ୍ତୁ ଥରେ ସେ ସହରକୁ ଯାଇ ସେଠି ଦୁଇମାସ ରହି ଯେତେବେଳେ ଗାଁକୁ ଫେରିଲେ, ସେତେବେଳେ ତାଙ୍କ ଅବସ୍ଥା ବଦଳି ଯାଇଥିଲା । ସେ ପିନ୍ଧିଥିଲେ ସୁନ୍ଦର ପୋଷାକ । ଗଳାରେ ସୁନା ହାର ଥିଲା । ହାତରେ ଥିଲା ସୁନା ଆଙ୍ଗୁଠି । ଶମ୍ଭୁ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଆଶ୍ଚର୍ଯ୍ୟ ହେବାରୁ ଶିଳ୍ପୀ ତାକୁ କହିଲେ, "ଭାଇ, ଆମ ରାଜା ହେଲେ ଦାତା କର୍ଣ୍ଣ । ଏଭଳି କୌଣସି ଗରିବ ଲୋକ ନାହିଁ, ଯିଏ ରାଜାଙ୍କ ପାଖରେ ଭିକ୍ଷା କରି ଖାଲି ହାତରେ ଫେରି ଆସିଛି । ଆମ ରାଜାଙ୍କ ଭଳି ପୁଣ୍ୟାତ୍ମା ବାସ୍ତବିକ ଆଉ ନାହାନ୍ତି ।"

ଶିଳ୍ପୀଙ୍କ ଚିତ୍ର ଦେଖି ରାଜା କିପରି ଖୁସି ହେଲେ ଓ ତାଙ୍କୁ କିଛିଦିନ ଅତିଥିଶାଳାରେ ରଖାଇ ତାଙ୍କ ଚିତ୍ରକଳାକୁ ଅମାତ୍ୟମାନଙ୍କୁ ଦେଖାଇଲେ ଓ ଶେଷରେ ପ୍ରଚୁର ପୁରସ୍କାର ଦେଇ ବିଦାୟ ଦେଲେ, ଶିଳ୍ପୀ ଏସବୁ ବିଷଦ ଭାବରେ ଗପିଲେ ।

ଶମ୍ଭୁ ପିଲାବେଳେ ଗାଁ ଅବଧାନଙ୍କ ପାଖରୁ ବାରମ୍ବାର ଶୁଣିଥାଏ, ପୁଣ୍ୟପ୍ରାଣ ଲୋକଙ୍କୁ ଯିଏ ଦର୍ଶନ କରେ, ସିଏ ବି ପୁଣ୍ୟ ଅର୍ଜନ କରେ । ରାଜାଙ୍କ ମହତ୍ତ୍ୱ ବିଷୟରେ ଶମ୍ଭୁ ଅନେକ ଲୋକଙ୍କଠାରୁ ଅନେକ କଥା ଶୁଣିଥିଲା । ସେ ଥରେ ରାଜଧାନୀକୁ ଯାଇ ତାଙ୍କୁ ଦର୍ଶନ କରିବାକୁ ମନସ୍ଥ କଲା ।

ହୃଦୟ ଯାହାର ଉଦାର, ସନ୍ତୋଷ ତା'ର ସହଚର



କିନ୍ତୁ ସେ ଯେ ଅତ୍ୟନ୍ତ ଗରିବ, ରାଜା ସେକଥା ଜାଣିଲେ ହୁଏତ ତାକୁ ସାହାଯ୍ୟ କରିବାକୁ ବାହାରିବେ। ରାଜା ବଚରା କେତେ ଲୋକଙ୍କୁ ସାହାଯ୍ୟ କରିଥିବେ? ତାଙ୍କୁ ଖର୍ଚ୍ଚାନ୍ତ କରାଇବା ଶମ୍ଭୁର ଉଦ୍ଦେଶ୍ୟ ନଥିଲା।

ସେ ଅନେକ କଷ୍ଟ କରି କିଛି କିଛି ଅର୍ଥ ସଞ୍ଚୟ କରିବାକୁ ଲାଗିଲା। ସେପାଇଁ ମଝେ ମଝେ ସେ ଉପାସରେ ଶୋଉଥାଏ। ପ୍ରାୟ ଦେଢ଼ ବର୍ଷ ଏପରି କଷ୍ଟ କରି ସେ ଯେତକ ସଞ୍ଚିଲା, ସେଥିରେ ହଳେ ଯୋତା ଓ ନୂଆ ପୋଷାକ ତିଆରି କରି ପୁଟୁଳିରେ ବାନ୍ଧି ରାଜଧାନୀ ଅଭିମୁଖେ ଗଲା।

ତିନିଦିନ ପରେ ସେ ଯାଇ ରାଜଧାନୀରେ ପହଞ୍ଚିଲା। ରାଜାଙ୍କ ନଅର କେଉଁଠାରେ ସେକଥା କାହାକୁ ପଚାରିବା ଦରକାର ନଥିଲା। କାରଣ ସହର ମଝିରେ ସେ କୋଠା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଥାଏ।

ଶମ୍ଭୁ ଯାଇ ଫାଟକ ପାଖରେ ପହଞ୍ଚିଲା। "ଆରେ ଭିକାରି! କୁଆଡ଼େ ମାଡି ଚାଲିଛୁ?" ଏହା କହି ଦରୁଆନ୍‌ମାନେ ତାକୁ ରୋକି ଦେଲେ।

"ମୁଁ ଭିକାରି ନୁହେଁ। ମୁଁ ରାଜାଙ୍କ ଦର୍ଶନ ପାଇଁ ଯାଉଛି।" ଶମ୍ଭୁ ଉତ୍ତର ଦେଲା।

"ମଲ ମଲ, ଭିକାରିକୁ ଭିକାରି କହିଲେ ପୁଣି ତା'କୁ ବାଧୁଛି! ଆଚ୍ଛା, ଆଚ୍ଛା, ତୁ ଅମୀର। ତମ ଉଦ୍ଦେଶ୍ୟ?"

"ରାଜାଙ୍କୁ ଦେଖିବା।" ଶମ୍ଭୁ ଉତ୍ତର ଦେଲା।

"ରାଜାଙ୍କ ପାଖରେ ତୋ' କାମ କ'ଣ?" ଦରୁଆନ୍‌ମାନେ ପଚାରିଲେ।

ଶମ୍ଭୁ ଏ ପ୍ରଶ୍ନ ପାଇଁ ପ୍ରସ୍ତୁତ ନଥିଲା। ସେ ଦୋଦୋପାଞ୍ଚ କରି କହିଲା, "କାମ କିଛି ନାହିଁ। ଖାଲି ଦର୍ଶନ କରି ଚାଲି ଆସିବି।"

ଦରୁଆନ୍‌ମାନେ ହସିଲେ ଓ କହିଲେ, "ଆରେ, ଗାଉଁଲି! ତୁ ଆମକୁ ବହୁତ ଓଲୁ ଓ ନିଜକୁ ବହୁତ ଚତୁର ବୋଲି ଭାବିଛୁ, ନୁହେଁ? ଶୁଣ, ତୋର ଯଦି କିଛି ପଇସାପତ୍ର ବା କାମଧନ୍ଦା ଦରକାର, ତେବେ ସେପାଇଁ

ଜଣେ ମନ୍ତ୍ରୀ ଅଛନ୍ତି । ତାଙ୍କ ପାଖକୁ ଯା । କିନ୍ତୁ ତୁ ଆମକୁ ଠକିବାକୁ ଚେଷ୍ଟା କଲୁ । ଅତଏବ ଆମେ ତୋତେ ତାଙ୍କ ପାଖକୁ ବି ଛାଡ଼ିବୁଁ ନାହିଁ । ଯା, ପଳା ।"

ଶମ୍ଭୁ କିଛିଏ ଦୂରେଇ ଯାଇ ଠିଆ ହେଲା । ଭାବିଥିଲା ବିଦ୍ୱାନ୍‌ମାନେ କିଛି ସମୟ ପରେ ତା' ପ୍ରତି ସଦୟ ହୋଇ ତା' ସହ କଥାବାର୍ତ୍ତା କରିବେ । କିନ୍ତୁ ଦୀର୍ଘ ସମୟ ବିତିଯିବା ସତ୍ତ୍ୱେ ସେମାନଙ୍କ ଭିତରେ ସେଭଳି ଭାବ ଦେଖାଗଲା ନାହିଁ । ସେ ଆସ୍ତେ ଆସ୍ତେ ସେଠାରୁ ଚାଲିଗଲା ।



ଶମ୍ଭୁ ମନରେ ବହୁତ କଷ୍ଟ ହେଲା । ସେ ଉଆସ ପାଖରୁ ଯାଇ ରାସ୍ତା କଡ଼ରେ ଜଣେ ଦୁଇଜଣ ଲୋକଙ୍କୁ ତା' ସମସ୍ୟା କହିଲା । ସେମାନେ କହିଲେ, "ଅରେ ଯେତେବେଳେ ବିଦ୍ୱାନ୍‌ମାନେ ରଗିଡ଼ି ଗଲେଣି, ସେତେବେଳେ ସେମାନଙ୍କୁ ଦୁଇ ପଇସା ନଦେଲେ ସେମାନେ ଭିତରକୁ ଛାଡ଼ିବେ ନାହିଁ । ବର୍ତ୍ତମାନ ସନ୍ଧ୍ୟା ହେଲାଣି । ଆଗାମୀ କାଲି ଚେଷ୍ଟା କରିବ ।"

କିନ୍ତୁ ଶମ୍ଭୁ ରାତିରେ ରହିବ କେଉଁଠି ? ଗାଁରେ ସିନା ଯାହା ପିଣ୍ଡାରେ ଶୋଇ ପଡ଼ିଲେ ଚଳିଯିବ, କିନ୍ତୁ ରାଜଧାନୀରେ ରାତିଯାକ ପ୍ରହରୀମାନେ ବୁଲନ୍ତି । କାହାକୁ ସେମିତି ଭାବରେ ଦେଖିଲେ ଗିରଫ୍ କରିନେବେ । ନୂଆଏ ଏଣୁ ତେଣୁ ପ୍ରଶ୍ନ କରିବେ । ନାନା ସନ୍ଦେହ ପୋଷଣ କରି ତା' ବିଷୟରେ ଅନୁସନ୍ଧାନ କରିବେ । ସେକଥା ଭାବି ଶମ୍ଭୁକୁ ଛନିଆ ଲାଗିଲା । ଶମ୍ଭୁ ଅନୁସନ୍ଧାନ କରି ବୁଝିଲା, ସହରର ଶେଷ ପ୍ରାନ୍ତରେ ଗୋଟିଏ ଧର୍ମଶାଳା ଅଛି । ସେଠି ମାଗଣାରେ ଯାତ୍ରୀମାନେ ରହିପାରନ୍ତି ।

ଶମ୍ଭୁ ସେହି ଦିଗରେ ଚାଲିଲା । ସେତେବେଳକୁ ତାକୁ ବହୁତ କ୍ଳାନ୍ତ ଲାଗିଲାଣି । ବାଟରେ ଗୋଟିଏ ନିର୍ଜନ ସ୍ଥାନରେ ସେ ବସି ପଡ଼ିଲା ।

ହଠାତ୍ ଜଣେ ଲୋକ ସେଠାରେ ପହଞ୍ଚିଯାଇ ତାକୁ ଗମ୍ଭୀର ଭାବରେ ପଚାରିଲେ, "ତମେ କିଏ ? ଏଠି କ'ଣ କରୁଛ ?"



ଶମ୍ଭୁ କହିଲା, "ମୁଁ ଏ ରାଜ୍ୟର ଜଣେ ସାଧାରଣ ପ୍ରଜା। ଆମ ରାଜା ଜଣେ ପୁଣ୍ୟାତ୍ମା। ତାଙ୍କୁ ଥରେ ଦର୍ଶନ କରିବାକୁ ଆସିଥିଲି ଯେ, ତାହା କିନ୍ତୁ ମୋ ଭାଗ୍ୟରେ ନାହିଁ।"

"ରାଜାଙ୍କ ପାଖରେ ତୁମର କି କାମ ଥିଲା ?" ସେ ଲୋକ ପଚାରିଲେ।

ଶମ୍ଭୁ ବିକଳ ଭାବରେ ହସିଲା ଓ କହିଲା, "ବାବୁ, ସବୁ ଅସୁବିଧା ସେଇଠି। ମୋର କାମ କିଛି ନାହିଁ। କିନ୍ତୁ ଦରୁଆନ୍‌ମାନେ ମୋ କଥା ବିଶ୍ୱାସ କଲେ ନାହିଁ। ଜଣେ ପୁଣ୍ୟାତ୍ମା ରାଜାଙ୍କୁ ଦର୍ଶନ କରିବା କ'ଣ କାମ ନୁହେଁ ? ଏ କଥା ମୋ ଭଳି ଗାଉଁଲି ଲୋକଟାଏ କାହାକୁ ବା ବୁଝାଇ ପାରିବ ?"

ସେ ଅପରିଚିତ ଲୋକ ତାକୁ ପଚାରି ପଚାରି ସବୁ କଥା ଶୁଣିଲେ, କିନ୍ତୁ କହିଲେ, "ମୋର ସନ୍ଦେହ ହେଉଛି। ତୁମେ ସେ ପୁଟୁଳାରେ ରଖିଛ କ'ଣ ?"

ଶମ୍ଭୁ ଦ୍ୱିଧା ନକରି ପୁଟୁଳି ଖୋଲି ଦେଖାଇଲା। ଭିତରେ ଥିଲା ନୂଆ ପୋଷାକ ଓ ନୂଆ ଯୋତା।

"ଦେଖ, ତୁମେ ଯେଉଁ ପୋଷାକ ପିନ୍ଧିଛ, ତାହା ଯେତିକି ପୁରୁଣା, ସେତିକି ସାଧାରଣ। ପୁଟୁଳାରେ ଥିବା ଏ ପୋଷାକ ଓ ଯୋତା ଦାମିକା। ଏହା ତୁମର ହୋଇ ପାରେନା। ଚୋରି କରିଛ ?" ଅପରିଚିତ ଲୋକ ଜେରା କଲେ।

"ବାବୁ, ବହୁତ କଷ୍ଟ କରି ଭୋକ ଉପାସରେ ରହି ପଇସା ସଞ୍ଚି ଏହାକୁ ତିଆରି କରିଥିଲି। ରାଜାଙ୍କ ପାଖକୁ ଯିବାର ସୁଯୋଗ ପାଇଥିଲେ ଏହାକୁ ପିନ୍ଧି ଯାଇଥାନ୍ତି।" ଶମ୍ଭୁ କହିଲା।

"କାହିଁକି ? ତୁମର ଏ ଚିରା ପୋଷାକରେ ଯାଇନଥାନ୍ତ କାହିଁକି ?" ଅପରିଚିତ ଲୋକ ପଚାରିଲେ।

"ବାବୁ, ରାଜା ରାଜ୍ୟ ଯାକର ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ଦୂର କରିବାକୁ କେତେ ଚେଷ୍ଟା ନ କରୁଛନ୍ତି ! ତଥାପି ମୋ ଭଳି ଦୁଇ ଚାରିଜଣ ହତଭାଗ୍ୟ ଲୋକ ଅତ୍ୟନ୍ତ ଗରିବ ଭାବରେ ଚଳୁଛନ୍ତି। କିନ୍ତୁ ସେକଥା ରାଜାଙ୍କୁ

ଜଣାଇବା କ'ଣ ଦରକାର ? ମୁଁ ଯେଉଁ ପୋଷାକ ପିନ୍ଧିଛି, ସେ ପୋଷାକରେ ମୋତେ ଦେଖିଲେ ଆମ ଦୟାଳୁ ରାଜାଙ୍କ ହୃଦୟରେ କଷ୍ଟ ହେବ । ସେଥିପାଇଁ ମୁଁ ଭଲ ପୋଷାକ ତିଆରି କରିଥିଲି ।" ଶମ୍ଭୁ କହିଲା ।

କିନ୍ତୁ ଏତିକି କହି ସାରି ଶମ୍ଭୁ ଦେଖିଲା, ସେ ଅପରିଚିତ ଲୋକ ନିଜ ଆଖି ପୋଛୁଲେ । ଶମ୍ଭୁ ଆଶ୍ଚର୍ଯ୍ୟ ହେଲା । କିନ୍ତୁ ତା' ଆଶ୍ଚର୍ଯ୍ୟ ଅତି ଶୀଘ୍ର ଆନନ୍ଦ ଓ କୃତଜ୍ଞତାରେ ପରିଣତ ହେଲା । ସେ ନିଜ ପରିଚୟ ଦେଲେ । ସେ ଆଉ କେହି ନୁହନ୍ତି, ସ୍ୱୟଂ ରାଜା । ଛଦ୍ମ-ବେଶରେ ସହରର ଅବସ୍ଥା ଦେଖିବା ପାଇଁ ବୁଲୁଥିଲେ ।

ରାଜା ଶମ୍ଭୁକୁ ସାଥିରେ ନେଇଯାଇ ଅତିଥି ଭବନରେ ରଖାଇ ସକାଳେ ଆସି ଉଆସରେ ତାଙ୍କୁ ଦେଖା କରିବାକୁ କହିଲେ ।

ସକାଳ ହେଲା । କିନ୍ତୁ ଶମ୍ଭୁ ଆସିଲା ନାହିଁ । ରାଜା ଅନେକ ସମୟ ଅପେକ୍ଷା କରି ତାକୁ ଡାକି ଆଣିବାକୁ ଲୋକ ପଠାଇଲେ । ଦେଖିବା ବେଳକୁ ସୂର୍ଯ୍ୟୋଦୟ ପୂର୍ବରୁ ଶମ୍ଭୁ ଚାଲିଗଲାଣି । ରାଜାଙ୍କ ଘୋଡ଼ସବାର ସିପାହୀ ଯାଇ ଶମ୍ଭୁକୁ ଅନେକ ଦୂରରେ ଭେଟିଲେ । ଶମ୍ଭୁ ତା' ଗାଁ ମୁହଁ ଚାଲିଥାଏ । ସେମାନେ ତାକୁ ଘୋଡ଼ାରେ ବସାଇ ରାଜାଙ୍କ ପାଖକୁ ନେଇ ଆସିଲେ ।

"ଶମ୍ଭୁ ! ତମେ ଚାଲିଗଲ କାହିଁକି ?" ରାଜା ପଚାରିଲେ ।

ଶମ୍ଭୁ ପ୍ରଥମେ ନୀରବ ରହି ତା'ପରେ କହିଲା, "ମହିମା ! ମୁଁ ଆସିଥିଲି ଆପଣଙ୍କ ଦର୍ଶନ ପାଇଁ । ଭାଗ୍ୟକୁ ଦର୍ଶନ ହୋଇଗଲା । ସକାଳେ ପୁଣି କାହିଁକି ଆପଣଙ୍କ ସମୟ ନଷ୍ଟ କରନ୍ତି ?"

ରାଜା କହିଲେ, "ଶମ୍ଭୁ, ତୁମ ଭଳି ସରଳ ଓ ବିବେକୀ ଲୋକ ଯେ ମୋ ରାଜ୍ୟରେ ଅଛନ୍ତି, ଏହାହିଁ ମୋର ପୁଣ୍ୟ ।" ଏହା କହି ରାଜା ଶମ୍ଭୁକୁ ବହୁତ ଟଙ୍କା ପଇସା ଦେଲେ ଓ ଘୋଡ଼ାଗାଡ଼ିରେ ତା' ଗାଁକୁ ପଠାଇଦେଲେ ।





# ଭାଗ୍ୟ ପରୀକ୍ଷା

ସୋମନାଥପୁରରେ ସାମନ୍ତ ରାଜା ଥରେ ତାଙ୍କ ରାଜ୍ୟର ଗୋଟିଏ ପ୍ରାନ୍ତରେ ଜଣେ ବିଚାରକ ନିଯୁକ୍ତ କରିବାକୁ ଇଚ୍ଛା କଲେ ଓ ସେହି ଅନୁସାରେ ଉପଯୁକ୍ତ ପ୍ରାର୍ଥୀମାନଙ୍କର ଦିନେ ପରୀକ୍ଷା ନିଆହେବ ବୋଲି ଘୋଷଣା କରିଦିଆ ହେଲା ।

ସେ ଚାହୁଁଥିଲେ ପ୍ରାର୍ଥୀମାନେ ଯୁବକ ହୋଇଥିବେ । ତାହାହେଲେ ପ୍ରଥମେ ପୁରୁଖା ଆଇନଜ୍ଞମାନଙ୍କ ଦ୍ୱାରା ସେମାନଙ୍କୁ ବିଚାରର ନିୟମ କାନୁନ୍ ବିଷୟରେ ତାଲିମ ଦିଆଯିବ । ଅବଶ୍ୟ ଯୁବକମାନଙ୍କର ଶିକ୍ଷାଗତ ଓ ଅନ୍ୟାନ୍ୟ ଯୋଗ୍ୟତା କ'ଣ ହେବା ଦରକାର ସେ ବିଷୟରେ ଯଥାର୍ଥ ବିଜ୍ଞପ୍ତି ଦେଇ ଦିଆଗଲା ।

ସେଦିନ ଉପସ୍ଥିତ ହେଲେ ପନ୍ଦରଜଣ ପ୍ରାର୍ଥୀ । ସାମନ୍ତରାଜା ସେମାନଙ୍କୁ କହିଲେ, "ଦେଖ, ପଦ ମାତ୍ର ଗୋଟିଏ । ପ୍ରାର୍ଥୀ କିନ୍ତୁ ପନ୍ଦରଜଣ । ତେଣୁ ମୁଁ ଗୋଟାଏ ଏପରି ପଦ୍ଧତି ସ୍ଥିର କରିଛି, ଯାହା ଦ୍ୱାରା ମନୋନୟନ ସହଜ ହେବ । ଏ ପାଖ କୋଠରୀରେ ରହିଛି ପନ୍ଦରଟି ପାତ୍ର । ସବୁ ଗୁଡ଼ିକର ମୁହଁ ବନ୍ଦ ଅଛି । ଗୋଟିଏ ପାତ୍ର ଭିତରେ ସ୍ୱର୍ଣ୍ଣମୁଦ୍ରାଟିଏ ଅଛି । ପ୍ରତ୍ୟେକ ପ୍ରାର୍ଥୀ ଆସି ଗୋଟିଏ ପାତ୍ର ଖୋଲିବେ । ଯିଏ ସ୍ୱର୍ଣ୍ଣମୁଦ୍ରା ଥିବା ପାତ୍ରଟି ଖୋଲିବ, ବିଚାରକ ପଦ ସେ ପାଇବ ।"

ଏ ଘୋଷଣା କରି ସାରି ରାଜା ପ୍ରାର୍ଥୀମାନଙ୍କ ଆଡ଼କୁ ଅନାଇ ପଚାରିଲେ, "କ'ଣ କହୁଛ, ଭଲ ବ୍ୟବସ୍ଥା ନୁହେଁ ?"

ପନ୍ଦରଜଣରୁ ଚଉଦଜଣ ସଙ୍ଗେ ସଙ୍ଗେ କହିଲେ, "ମହାରାଜାଙ୍କ ସିଦ୍ଧାନ୍ତ କେବେ ଭୁଲ୍ ହୋଇ ପାରେ ? ଏହା ଅତି ବିଚକ୍ଷଣ ବ୍ୟବସ୍ଥା ।"

ରାଜା ହସିଲେ ।

"ହଉ । ତେବେ ପ୍ରସ୍ତୁତ ହୁଅ ।" ସେ କହିଲେ । ଏହାପରେ ପାନ ଧାଡି ପାଖରେ ରାଜା ବସିଲେ । ଜଣ ଜଣ କରି ପ୍ରାର୍ଥୀ ଭିତରକୁ ଆସି ଗୋଟିଏ ଗୋଟିଏ ପାନ ଖୋଲିଲେ ଓ ହତାଶ ହୋଇ ବାହାରିଗଲେ ।

ଚଉଦଜଣ ଯିବା ପରେ ରାଜା ପଞ୍ଚଦଶ ପ୍ରାର୍ଥୀ ପାଇଁ ଅପେକ୍ଷା କରିଥାନ୍ତି । କିନ୍ତୁ ସେ ଭିତରକୁ ନ ଆସିବାରୁ ରାଜା ବାହାରିଗଲେ ଓ ତାକୁ ପଚାରିଲେ, "କିହୋ ! ତମେ ଏତେ ଡେରି କରୁଛ କାହିଁକି ?"

"ମହିମା, ମୋର ବିଚାରକ ପଦ ପାଇଁ ଯୋଗ୍ୟତା ନାହିଁ ।" ଯୁବକ କହିଲା ।

"ଏପରି କାହିଁକି କହୁଛ ?" ରାଜା ପଚାରିଲେ ।

"ମହିମା, ମୁଁ ଏପରି କହୁନାହିଁ, ଆପଣହିଁ ପରୋକ୍ଷରେ କହୁଛନ୍ତି କି ଆମର କାହାରି ଯୋଗ୍ୟତା ନାହିଁ । ବିଚାରକ ହେବା ପାଇଁ ଆବଶ୍ୟକ ବିବେକ, ଧୈର୍ଯ୍ୟ, ବୁଦ୍ଧି ଓ ଆଇନ ଜ୍ଞାନ । ଆପଣ ସେସବୁର ପରୀକ୍ଷା ନ ନେଇ ଗୋଟିଏ ଅଜବ୍ ପରୀକ୍ଷା ରଖିଛନ୍ତି । ଅର୍ଥାତ୍, ଆପଣ ଆମ ପାଖରେ ବିଚାରକ ସୁଲଭ ଗୁଣ ଥିବ ବୋଲି ଭାବୁ ନାହାନ୍ତି । ଧରନ୍ତୁ ମୋର ଆବଶ୍ୟକୀୟ ଗୁଣ ନାହିଁ, ଅଥଚ ମୁଁ ଠିକ୍ ପାନଟି ଛୁଇଁ ଦେଲି । ମୁଁ ବିଚାରକ ବନିଯିବି । କିନ୍ତୁ ତା'ପରେ ମୋ କର୍ତ୍ତବ୍ୟ ତୁଲାଇ ପାରିବି କି ?" ପଞ୍ଚଦଶ ଯୁବକ କହିଲା ।

ରାଜା ଆନନ୍ଦରେ ତା'କୁ ସ୍ୱାଗତ କଲେ । ସେ କହିଲେ, "ଯୁବକ, ବାସ୍ତବରେ କୌଣସି ପାନରେ ସୁନା ନାହିଁ । ମୁଁ ପ୍ରାର୍ଥୀମାନଙ୍କ ଭିତରୁ ଏ ବ୍ୟବସ୍ଥା ଅଯଥା ବୋଲି କିଏ କହିବ ସେଇଆ ଶୁଣିବାକୁ ଅପେକ୍ଷା କରିଥିଲି । ବର୍ତ୍ତମାନ ମୋର ଯୋଜନା ସଫଳ ହେଲା । ତମର ବିବେକ ଓ ସାହସ ଅଛି ବୋଲି ବୁଝିଲି । ପରୀକ୍ଷା ହୋଇଗଲା । ତମେ ସଫଳ ଭାବରେ ଉତ୍ତୀର୍ଣ୍ଣ ହେଲ ।"

ସେ ଯୁବକକୁ ବିଚାରକ ପଦ ମିଳିଲା ।



# ନିଦ ଔଷଧ

ରବି କିଛି କାମଦାମ କରୁ ନଥାଏ । ସେ ଦୋକାନରେ ବସି ହାଇ ମାରୁଥାଏ । ତା' କର୍ମଚାରୀ ଠକାଠକି କରୁଥାଏ । ଘରେ ସେ ଶୋଉଥାଏ ଗୋଟାଏ କାଠଗଣ୍ଡି ଭଳି ।

ତା' ବନ୍ଧୁ ସୁରେଶ ତାକୁ ବାରମ୍ବାର କହୁଥାଏ, "ଦେଖ ରବି, ତୁ ଏତେ ଶୋଇବା ଭଲ ନୁହେଁ । କିଛି ଖେଳଧୂଳି କର । ଖିଆପିଆ ନିୟମିତ ଓ ପରିମିତ ଭାବରେ କର । ଗୀତ ଶୁଣିବା ବା ବହି ପଢ଼ିବା ଭଳି କିଛି ଭଲ ଅଭ୍ୟାସ ବି କର ।"

"ଆରେ ଭାଇ, ଏତେ କାମ ମୋର କିଏ କରିବ!" ଏହା କହି ଗର୍ବରେ ସେ ପ୍ରସଙ୍ଗ ଏଡ଼ାଇ ଯାଏ ।

ଦିନେ ଦୋକାନରେ କର୍ମଚାରୀ ନଥିଲେ । ସେ ଢୁଳାଉଥିଲା । ଚୋର ଆସି ତା' ଟଙ୍କା ବାକ୍ସଟି ଉଠାଇ ନେଇଗଲା । ତେଣିକି ସେ ସଜାଗ ରହିବାକୁ ମନସ୍ଥ କଲା । କିନ୍ତୁ ଫଳ ହେଲା ନାହିଁ ।

କବିରାଜ ବୋଲାଉଥିବା ଜଣେ ଅପରିଚିତ ଲୋକ ତାକୁ କହିଲା, "ନିଦ ଛଡ଼ାଇବା ପାଇଁ ଅମୋଘ ଔଷଧ ମୋଠି ଅଛି । ସେ ବଟିକା ଖାଇ ଶୋଇଗଲେ ସୂର୍ଯ୍ୟୋଦୟ ପୂର୍ବରୁ ଜରୁର୍ ନିଦ ଭାଙ୍ଗିବ ।" ତା' କଥାରେ ସତ୍ୟତା ପ୍ରମାଣ କରିବା ପାଇଁ କବିରାଜ ସେ ରାତିରେ ତା' ଘରେ ରହିଲା ।

ରବି ବାସ୍ତବିକ ସୂର୍ଯ୍ୟୋଦୟର ବହୁ ପୂର୍ବରୁ ଉଠି ପଡ଼ିଲା । ବାହାଦୁରୀ ଦେଖାଇବା ନିମନ୍ତେ ସେ ସୁରେଶ ଘର ଆଡ଼େ ଗଲା । ବାଟରେ ସୁରେଶ ସହ ଭେଟ ହୋଇଗଲା । ସୁରେଶ ପଚାରିଲା, "ଗତ କାଲି ସାରାଦିନ କୁଆଡ଼େ ଥିଲୁ ?" ସେତେବେଳକୁ ଯାଇ ରବି ବୁଝିଲା ଯେ ସେ ଗୋଟାଏ ରାତି ଓ ପୂରା ଗୋଟାଏ ଦିନ ଶୋଇ ଦ୍ୱିତୀୟ ରାତି ଶେଷ ହେବା ବେଳକୁ ଉଠିଛି । ଘରକୁ ଯାଇ ଦେଖିଲା ଅନେକ ମୂଲ୍ୟବାନ ଜିନିଷ ଧରି ବୈଦ୍ୟ ଚମ୍ପଟ ଦେଇଛନ୍ତି ! ରବି ଏଥର ବୁଝିଲା, ଯାଦୁ ଔଷଧ ଦ୍ୱାରା ନୁହେଁ, ଶୃଙ୍ଖଳା ଦ୍ୱାରା ନିଦ ଅଭ୍ୟାସ ବଦଳାଇବାକୁ ହେବ ।






[୧୭]

[ଉଗ୍ରଦତ୍ତର ଓ ତାଙ୍କ ବନ୍ଧୁ ଅରୁଦ୍ରଙ୍କୁ ଦୁଇଟି ଭୟଙ୍କର ପକ୍ଷୀ ଉପରେ ବସାଇ ବ୍ୟାଘ୍ରଚର୍ମଧାରୀ ଲୋକେ ଅଗ୍ନିଦ୍ୱୀପରେ ଯାଇ ପହଞ୍ଚିଲେ । ସେମାନେ ଅବତରଣ କରିବା ପୂର୍ବରୁ ଭଲ୍ଲୁକଚର୍ମଧାରୀ ଗୋଷ୍ଠିର ଲୋକେ ସେମାନଙ୍କୁ ଆକ୍ରମଣ କଲେ । ଉଗ୍ରଦତ୍ତ ଯେଉଁ ପକ୍ଷୀ ଉପରେ ବସିଥିଲେ ତାହା ଏକ ପାହାଡ ଉପରେ ଓଲ୍ହାଇଲା । ବ୍ୟାଘ୍ରଚର୍ମଧାରୀମାନେ ସେ ମରିଛନ୍ତି ଭାବି ଛାଡ଼ି ଦେଇ ଚାଲିଗଲେ । ତା'ପରେ କେତେଜଣ ଭଲ୍ଲୁକଚର୍ମଧାରୀ ଲୋକେ ତାଙ୍କୁ ଦେଖିଲେ, ଓ ତାଙ୍କୁ ଗୋଟିଏ ସୁଡ଼ଙ୍ଗ ଭିତରକୁ ନେଇଗଲେ । ତା'ପରେ···]

ଭଲ୍ଲୁକଚର୍ମଧାରୀମାନେ ସୁଡ଼ଙ୍ଗ ଦ୍ୱାର ବନ୍ଦ କରିବା ମାତ୍ରେ ଭିତରଟା ଅନ୍ଧକାର ହୋଇଗଲା । ସେହି ଅନ୍ଧକାର ଭିତରେ ଉଗ୍ରଦତ୍ତ ଆଗକୁ ଆଗକୁ ଚାଲିଲେ । ସେ ଥରେ ଅଧେ ଝୁଣ୍ଟି ପଡିଯିବା ଅବସ୍ଥାକୁ ଆସିଲେ ଭଲ୍ଲୁକଚର୍ମଧାରୀମାନେ ତାଙ୍କୁ ଧରି ପକାଇ କହୁଥାନ୍ତି, "ଦେଖ ବାବୁ, ଧୀରେସୁସ୍ଥେ ବାଟ ଚାଲ । କୋଡଏଟି ପାହାଡ଼ ଅତିକ୍ରମ କରିବା ପରେ ଯାଇ ସୁଡ଼ଙ୍ଗର ତଳ ଦେଶରେ ପହଞ୍ଚିବା ।" ଏହା କହି ସେମାନେ ନିଜ ପୋଷାକମାନ ଭିତରୁ ଖଣ୍ଡିଏ ଖଣ୍ଡିଏ ମଣି ବାହାର କଲେ । ସେ ମଣି ଟକ୍ ଟକ୍




କରୁଥାଏ ଓ ଆଲୁଅ ଦେଉଥାଏ । ଏଣିକି ସେ ଆଲୁଅରେ ବାଟ ଦେଖିବା ସହଜ ହେଲା ।

ସେମାନଙ୍କ ହାତରେ ସେ ଅଦ୍ଭୁତ ମଣି ଦେଖି ଉଗ୍ରଦତ୍ତ ବିସ୍ମିତ ହେଲେ । ଏମାନଙ୍କୁ କ'ଣ ଦୀପ ଜାଳିବାର କୌଶଳ ଜଣା ନାହିଁ ? ଯେଉଁମାନେ ମଣିକୁ ପ୍ରଦୀପ ଭଳି ବ୍ୟବହାର କରିବାକୁ ସକ୍ଷମ, ସେମାନେ କେବେ ବି ସାଧାରଣ ମଣିଷ ନୁହନ୍ତି । ଉଗ୍ରଦତ୍ତ ଏହିପରି ନାନା କଥା ଭାବିବାକୁ ଲାଗିଲେ ।

କିଛି ସମୟ ପରେ ସେ ସଙ୍କୋଚ ଛାଡ଼ି ପଚାରିଲେ, "ଆଚ୍ଛା ଆପଣମାନଙ୍କ ପାଖରେ ଆଲୁଅ ଜଳାଇବା ସକାଶେ ଅନ୍ୟ ପନ୍ଥା ଅଛି କି ? ତେଲ ବ୍ୟବହାର କରନ୍ତି ତ ?"

"ତେଲ ? ହଁ ହଁ । ଏଠାକୁ ଗୁଲାମ ହୋଇ ଆସିଥିବା ତମ ଦେଶର ଲୋକଙ୍କଠାରୁ ଆମେ ସେ ତେଲ ବିଷୟରେ ଅବଶ୍ୟ ଶୁଣିଛୁ କିନ୍ତୁ କେବେ ଦେଖିନାହୁଁ ।" ଜଣେ ଭାଲୁକ-ଚର୍ମଧାରୀ କହିଲା ।

ଉଗ୍ରଦତ୍ତ ଏମାନଙ୍କ ସଭ୍ୟତା ବିଷୟରେ ଆହୁରି ଅଧିକ ବିସ୍ମୟ ଅନୁଭବ କଲେ । ଏ ଦେଶରେ ରାଜକୁମାରୀ ଚନ୍ଦ୍ରଲେଖାଙ୍କ ଅବସ୍ଥା କ'ଣ ହୋଇଥିବ ? ତାଙ୍କ ପ୍ରତି ବ୍ୟାଘ୍ରଚର୍ମ-ଧାରୀଙ୍କ ସର୍ଦ୍ଦାର କି ଭଳି ବ୍ୟବହାର କରୁଥିବ ? ପୁଣି ତାଙ୍କ ମିତ୍ର ରୁଦ୍ର ଅରୁଦ୍ର କୁଆଡ଼େ ଗଲେ ?

"ଆଚ୍ଛା, ଏ ସୁଡ଼ଙ୍ଗ ଯାଇଁ କେଉଁଠାରେ ପହଞ୍ଚିଛି ? ତମେମାନେ ମୋତେ କୁଆଡ଼େ ନେଇ ଯାଉଛ ? ଗୁଲାମ ଭାବରେ ବନ୍ଦି କରିଦେବାକୁ ନୁହେଁ ତ ? ମୋତେ ବ୍ୟାଘ୍ର-ଚର୍ମଧାରୀଙ୍କ ହାତରେ ସମର୍ପି ଦେବ ନାହିଁ ତ ?" ଉଗ୍ରଦତ୍ତ ଉତ୍କଣ୍ଠିତ ଭାବରେ ପଚାରିଲେ । ଭାଲୁକଚର୍ମଧାରୀମାନେ ତାଙ୍କୁ ମିତ୍ର ଭାବରେ ନା ଶତ୍ରୁ ଭାବରେ ଦେଖୁଛନ୍ତି, ସେତକ ସେ ବୁଝିପାରୁ ନଥିଲେ ।

ସେମାନେ ତାଙ୍କ ପ୍ରଶ୍ନ ସବୁ ଶୁଣି ହସିଲେ । ଜଣେ ଗମ୍ଭୀର କଣ୍ଠରେ କହିଲା, "ଅନ୍ୟକୁ ଗୁଲାମ ଭାବରେ ବନ୍ଦି କରିବାର ଥିଲେ ଏ ସୁଡ଼ଙ୍ଗ ଭିତରକୁ ଆଣିବାର ପ୍ରୟୋଜନ ନଥିଲା । ବ୍ୟାଘ୍ରଚର୍ମଧାରୀଙ୍କ ହାତରେ ଆମେ ବା ତମକୁ

ତାହାଙ୍କ ସପକ୍ଷ ନେବୁଁ ? ସେମାନେହିଁ ତ ତମକୁ ଏ ରାଜ୍ୟକୁ ଆଣିଲେ । ତେବେ ଆମେ ସବୁ ମଣିଷଙ୍କୁ ତ ଆଉ ସଙ୍ଗେ ସଙ୍ଗେ ବିଶ୍ୱାସ କରିପାରିବୁଁ ନାହିଁ !

କେହି କେହି ବିଶ୍ୱାସଯୋଗ୍ୟ ତ କେହି କେହି ଧପ୍‌ପାବାଜ । ତମ ଦେଶର କିଛି ଲୋକଙ୍କୁ ଆଣି ଗୁଲାମ କରିବା ନିମନ୍ତେ ବ୍ୟାଘ୍ରଚର୍ମଧାରୀମାନେ ଏକପାଦକୁ ସାହାଯ୍ୟ କରିଛନ୍ତି । ତମେ ନାଗବର୍ମାକୁ ଜାଣ ?"

"ହଁ, ହଁ, ନାଗବର୍ମାକୁ ଭଲ ଭାବରେ ଜାଣେ । ମ୍ୱାନେ, ତା' ବିଷୟରେ ଅନେକ କଥା ଶୁଣିଛୁ ।..." ଉଗ୍ରଦତ୍ତ ଆଉ କିଛି କହିବା ପୂର୍ବରୁ ଜଣେ ଭଲ୍ଲୁକଚର୍ମଧାରୀ ଆଉ ଜଣକୁ କହିଲା, "ତମେ ତାହାଙ୍କ ତାଙ୍କୁ ଏମିତି ପ୍ରଶ୍ନ କରୁଛ ? ଆମେ କମ କଥା କହିବା ଉଚିତ ବୋଲି ଆମ ନେତା ଯେ ଆମକୁ ବାରମ୍ବାର ଚେତାବନୀ ଦେଇଛନ୍ତି, ସେକଥା କ'ଣ ଭୁଲିଗଲ ?"

ଏ ଧମକ ଶୁଣି ପ୍ରଥମ ଭଲ୍ଲୁକଚର୍ମଧାରୀ ଚୁପ୍ ହୋଇଗଲା । ଏହାପରେ ସେମାନେ ନୀରବରେ ବାଟ ଚାଲିଲେ । ଉଗ୍ରଦତ୍ତ ବୁଝିଲେ କି କଥା କହିଲେ ଅନେକ ରହସ୍ୟ ଜଣା ପଡ଼ିଯିବା ଭୟରେ ସେମାନଙ୍କୁ କମ୍ କଥା କହିବାକୁ ନିର୍ଦ୍ଦେଶ ଦିଆଯାଇଛି । କିଛି ସମୟ ଚାଲିବା ପରେ ପରେ ମନେ ହେଲା ସୁଡ଼ଙ୍ଗ ଶେଷ ହୋଇ ଯାଇଛି । ଆଗରେ ପଥର ।



କାନ୍ଥ ସମ୍ମୁଖରେ ଥିବା ଲୋକ ଦୁଇଜଣ ପଥରର ଗୋଟିଏ କଡ଼ରେ ସାମାନ୍ୟ ଅଙ୍ଗୁଳି ଚାପିଦେବା ମାତ୍ରେ ପଥରଟି ଟିକିଏ ଘୁଞ୍ଚିଗଲା । ସଙ୍ଗେ ସଙ୍ଗେ ଆର ପାଖରୁ ଶୁଭିଲା, "ଶରଭମ !" ସଙ୍ଗେ ସଙ୍ଗେ ଭଲ୍ଲୁକଚର୍ମଧାରୀମାନେ କହିଲେ, "ଭଲ୍ଲୁକମ୍ !" ଏ ଉତ୍ତର ଶୁଣି ପଥର ଆହୁରି ଘୁଞ୍ଚିଗଲା । ସେ ପାଖରୁ ଜଣେ ଭଲ୍ଲୁକଚର୍ମଧାରୀ ତରବାରି ଉଦ୍ୟତ କରି ତାଙ୍କ ଆଡ଼େ ଅନାଇଲା ।

"ଶରଭମ" ଓ "ଭଲ୍ଲୁକମ" ସଙ୍କେତ ଶବ୍ଦ ବୋଲି ବୁଝିବାକୁ ଉଗ୍ରଦତ୍ତଙ୍କର ଅସୁବିଧା ହେଲା ନାହିଁ । ଉଗ୍ରଦତ୍ତଙ୍କର ମନେହେଲା, ଭଲ୍ଲୁକଚର୍ମଧାରୀମାନେ ବ୍ୟାଘ୍ରଚର୍ମଧାରୀଙ୍କ ଭଳି କ୍ରୁର ନୁହନ୍ତି । ଶତ୍ରୁମାନଙ୍କ କବଳରୁ




ଆତ୍ମରକ୍ଷା କରିବା ନିମନ୍ତେ ଏମାନଙ୍କୁ ଅବଶ୍ୟ ସତର୍କ ରହିବାକୁ ପଡ଼ୁଛି ।

ସେ ତରବାରି ଧରିଥିବା ପ୍ରହରୀ ପଚାରିଲା, "କ'ଣ ଏହି ଜଣଙ୍କୁ ପାଇଲ ? ଅନ୍ୟମାନେ ଗଲେ କୁଆଡ଼େ ?"

"ତମର ସେଥିରେ ଅଛି କ'ଣ ? ଅନ୍ୟ କଥାରେ ତମର ଏତେ କୌତୁହଳ କାହିଁକି ?" ଏହା କହି ଉଗ୍ରଦତ୍ତଙ୍କ ଆଗରେ ଥିବା ଭଲ୍ଲୁକଚର୍ମଧାରୀ ଦୁଇଜଣ ଶିଳାଟି ପୁରା ଘୁଞ୍ଚାଇ ଦେଲେ ।

ସେ ପାରିକୁ ଯାଇ ସେମାନେ ପୁଣି ଅଗ୍ରସର ହେଲେ । ସେମାନଙ୍କୁ ଅନୁସରଣ କରି ଆହୁରି କେତେଜଣ ଚାଲିଥାନ୍ତି । ଉଗ୍ରଦତ୍ତ ଭାବି ପାରୁ ନଥାନ୍ତି ଆଉ କେତେ ଦୂର ଯିବାକୁ ପଡ଼ିବ । ଭଲ୍ଲୁକଚର୍ମଧାରୀଙ୍କ ନେତା ନିଶ୍ଚୟ ବ୍ୟାଘ୍ରଚର୍ମଧାରୀମାନଙ୍କୁ ଡରି ଏ ଗୋପନ ସୁଡ଼ଙ୍ଗ ପଥ ଶେଷରେ ଅଛନ୍ତି । ଶତ୍ରୁକୁ ଡରି ଏମିତି ଭାବରେ ଲୁଚି ରହିବା ଗୋଟାଏ ଅଭିଶାପ ଛଡ଼ା ଆଉ କ'ଣ ହୋଇପାରେ ?

ଆଗରେ ଚାଲିଥିବା ଭଲ୍ଲୁକଚର୍ମଧାରୀମାନେ ହଠାତ୍ ରହିଗଲେ । ହାତରେ ଥିବା ମଣିକୁ ମୁଷ୍ଟିବନ୍ଧ କରି ହାତ ତଳକୁ କରି ତିନିଥର ହଲାଇଲେ । ପର କ୍ଷଣରେ ଗୋଟାଏ ଭୀଷଣ ଶବ୍ଦ ନିର୍ଗତ ହେଲା । ଚାହୁଁ ଚାହୁଁ ଭଲ୍ଲୁକଚର୍ମଧାରୀଙ୍କ ପାଦ ଦେଶରେ ଗୋଟାଏ ବଡ଼ ଫାଟ ଦେଖାଦେଲା । ଭିତରୁ ଦେଖାଗଲା ଆଖି ଝଲସିଗଲାଭଳି ଆଲୁଅ ।

"ଶୁଣ । ବର୍ତ୍ତମାନ ଏକୋଇଶଟି ପାହାଡ଼ ଅତିକ୍ରମ କରିବାକୁ ହେବ । ସାବଧାନରେ ଚାଲିବ ।" ଏହାପରେ ସତର୍କ କରିଦେଇ ସେମାନେ ଆଗକୁ ପାଦ ବଢ଼ାଇଲେ । ଉଗ୍ରଦତ୍ତ ବି ସତର୍କ ହୋଇ ଚାଲିଲେ ।

ଏହି ଦ୍ୱିତୀୟ ସୁଡ଼ଙ୍ଗ ମଧ୍ୟରେ ଗୋଟାଏ ଖାଇଥିଲା । ତାହାର ଭିତରୁ ଦିବାଲୋକ ଭଳି ଆଲୁଅ ବାହାରୁଥିଲା । ସେମାନେ ଯାଇ ଗୋଟିଏ ସମତଳ ସ୍ଥାନରେ ପହଞ୍ଚିଲେ । ସେଠାରେ ଗୃହଦ୍ୱାରରେ ମଣିମାନ ଖଞ୍ଜା ହୋଇଥିଲେ । ସେମାନଙ୍କ ଭିତରୁ ଅଦ୍ଭୁତ ଆଲୁଅ ବାହାରୁଥିଲା । ଆଗରେ ଥିଲା ଗୋଟିଏ



ଉଚ୍ଚ ତୋରଣ ଦ୍ୱାର । ତା'ର କବାଟ ବନ୍ଦ ଥିଲା । ଉଗ୍ରଦତ୍ତଙ୍କୁ ସବୁ ରହସ୍ୟମୟ ଲାଗୁଥିଲା । ଉଗ୍ରଦତ୍ତଙ୍କ ସାଙ୍ଗରେ ଆସିଥିବା ଭଲ୍ଲୁକ-ଚର୍ମଧାରୀଙ୍କ ଭିତରୁ ଜଣେ ଯାଇ ଦ୍ୱାର ଦେଶରେ ତିନିଥର ଆଘାତ କଲା । କବାଟ ଖୋଲିଗଲା ଆଗରେ ଗୋଟିଏ ସୁଦୃଶ୍ୟ ଆସନ ଉପରେ ବସିଥିଲେ ଜଣେ ବଳିଷ୍ଠ ବ୍ୟକ୍ତି । ତାଙ୍କ ଶୀରସ୍ତ୍ରାଣରେ ଲାଗିଥିଲା ଭଲ୍ଲୁକ କାନ । ସେ ନିଶ୍ଚୟ ଏମାନଙ୍କ ନେତା ହୋଇଥିବେ ।

ଭଲ୍ଲୁକଚର୍ମଧାରୀ ଲୋକଟି ସେ ସର୍ଦ୍ଦାରଙ୍କ ପାଖକୁ ଯାଇ କ'ଣ କହିଲା । ସର୍ଦ୍ଦାର ଉଗ୍ରଦତ୍ତଙ୍କ ଆଡ଼େ ଅନାଇ ମୁଣ୍ଡ ହଲାଇ କିଛି କହିଲା । ଭଲ୍ଲୁକଚର୍ମଧାରୀ ଉଗ୍ରଦତ୍ତଙ୍କ ପାଖକୁ ଫେରି ଆସି କହିଲା, "ଇଏ ହେଲେ ଆମ ନେତା କନ୍ଧ । ତୁମକୁ ତାଙ୍କ ପାଖକୁ ନେଇ ଯିବାପାଇଁ ସେ ନିର୍ଦ୍ଦେଶ ଦେଲେ ।"

ଉଗ୍ରଦତ୍ତ ନିର୍ଭୟରେ ଯାଇ କନ୍ଧଙ୍କ ଆଗରେ ଠିଆ ହେଲେ । ତାଙ୍କ ଉପରେ ଯେ ଅତ୍ୟାଚାର ହେବ ନାହିଁ, ତାଙ୍କର ଏ ବିଶ୍ୱାସ ଥିଲା ।

କନ୍ଧ ତୀବ୍ର ଦୃଷ୍ଟିରେ ଉଗ୍ରଦତ୍ତଙ୍କୁ ଅନାଇ ପଚାରିଲା, "ତମ ସାଥିରେ ଆଉ କେତେଜଣ ଥିଲେ ? ବ୍ୟାଘ୍ରଚର୍ମଧାରୀମାନେ ତମର କେତେ-ଜଣଙ୍କୁ ଅପହରଣ କରି ଆଣିଥିଲେ ?"

"ଚାରିଜଣଙ୍କୁ ଅପହରଣ କରି ଆଣିଛନ୍ତି । ତହିଁ ଭିତରୁ ଜଣେ ସ୍ତ୍ରୀଲୋକ ।" ଉଗ୍ରଦତ୍ତ ଉତ୍ତର ଦେଲେ ।

"ସେମାନେ ଗଲେ କୁଆଡ଼େ କହିପାରିବ ?" କନ୍ଧ ପଚାରିଲା ।

"ମୋତେ ଜଣାନାହିଁ ।" ଉଗ୍ରଦତ୍ତ କହିଲେ । ଅପହୃତ ବ୍ୟକ୍ତିମାନଙ୍କ ବିଷୟରେ କନ୍ଧର ଏତେ କୌତୁହଳ କାହିଁକି, ଉଗ୍ରଦତ୍ତ ସେକଥା ବୁଝିପାରିଲେ ନାହିଁ । ସେ ନିଜେ କିପରି ଅବସ୍ଥାରେ ଥିଲେ ଓ କିପରି ପରି-ସ୍ଥିତିରେ ସେ ଧରା ହୋଇ ଆସିଛନ୍ତି, ଏତକ କ'ଣ ସର୍ଦ୍ଦାର ଜାଣି ନାହାନ୍ତି ?

କନ୍ଧ ହଠାତ୍ ହସିଦେଇ ପଚାରିଲା, "ଶୁଣ, ମୁଁ ତୁମର ମିତ୍ର । ତମ ଦେଶରୁ ମଣିଷମାନଙ୍କୁ ଯେ ଚୋରି କରି ନେଉଛି, ସେଥିରେ ମୋର କୌଣସି ହାତ ନାହିଁ । ବୁଝିଲ ? ବ୍ୟାଘ୍ର-

ଚର୍ମଧାରୀମାନେ ଷେଁକାମ କରୁଛନ୍ତି । ସେମାନେ ତୁମର ଯେପରି ଶତ୍ରୁ, ଆମର ବି ସେହିପରି ଶତ୍ରୁ । ତୁମେ ତ ଦେଖୁଥିବ ମୋତେ କେତେ ସାବଧାନରେ ଲୁଚିକରି ରହିବାକୁ ପଡୁଛି । ଯେଉଁ ଏକପାଦ ଓ ତା'ର ଅନୁଚରମାନେ ଖାଲି ତୁମ ଦେଶପ୍ରତି ବିପଦ ନୁହେଁ, ଆମର ଏ ଅଗ୍ନିଦ୍ୱୀପ ପାଇଁ ମଧ୍ୟ ଭୟଙ୍କର ବିପଦ, ତାଙ୍କୁ ଶେଷ କରିବା ନିମନ୍ତେ ମୁଁ ତୁମ ଦେଶର ଜଣେ ଲୋକ ସହ ମିଶି ଗୋଟାଏ ଯୋଜନା କରିଛି । ତୁମେ ସେ ଲୋକକୁ ଜାଣିଛ ।" ଏହା କହି କନ୍ଧ ତା'ର ଜଣେ ଅନୁଚରକୁ କିଛି ଇଶାରା ଦେଲା ।

ସେ ଲୋକଟି କନ୍ଧର ଆସନ ପଛ ପାଖରେ ଥିବା ଗୋଟିଏ ଦ୍ୱାର ଖୋଲିଦେଲା । ତହିଁ ଭିତରୁ ଅଳ୍ପ ହସି ବାହାରି ଆସିଲା ରୁଦ୍ର । ସେ ଉଗ୍ରଦତ୍ତ ପାଖକୁ ଦୌଡ଼ି ଆସି କହିଲା, "ଭାଇ, ତୁମେ ନିରାପଦରେ ଅଛ, ମୋ ପକ୍ଷରେ ଏହା କେଡ଼େ ଆନନ୍ଦର ବିଷୟ, ସେକଥା ଭାଷାରେ ବା କ'ଣ କହିବି !"

"ରୁଦ୍ର !" ଉଗ୍ରଦତ୍ତ ଆନନ୍ଦରେ କିଛି ସମସ୍ତ କଥା କହିପାରିଲେ ନାହିଁ । ତା'ପରେ ସେ ପଚାରିଲେ, "ଆଚ୍ଛା, ଅରୁଦ୍ର କାହିଁ ? ରାଜକୁମାରୀ ଚନ୍ଦ୍ରଲେଖାଙ୍କ ଖବର କ'ଣ ?"

"ଭାଇ, ସେ ଦୁହେଁ ବ୍ୟାଘ୍ରଚର୍ମଧାରୀଙ୍କ କବଳରେ ବୋଲି ଶୁଣିଛି ।" ରୁଦ୍ରଙ୍କ କଣ୍ଠସ୍ୱରରେ ଥିଲା ଉଭୟ ଆଶା ଓ ନିରାଶା ।




କନ୍ଧ ଠିଆହେଲା ଓ ଉଗ୍ରଦତ୍ତଙ୍କୁ କହିଲା, "ମୁଁ ରୁଦ୍ରଠୁଁ ତୁମ ବିଷୟରେ ଅନେକ କଥା ଶୁଣିଛି । ଏତେଦିନ ପରେ ଏକପାଦ ଓ ତା' ଅନୁଚର ଉପରେ ପ୍ରତିଶୋଧ ନେବା ନିମନ୍ତେ ସୁଯୋଗ ମିଳିଛି । ଏଥର ଆମକୁ ନିଶ୍ଚେ ସଫଳତା ମିଳିବ । ଆମେ କରିଥିବା ଯୋଜନା ବିଷୟରେ ଆଲୋଚନା କରିବା । ଅସଲ କଥା ହେଲା ତୁମ ପାଳକ ପିତା, ଉଗ୍ରାକ୍ଷ ଓ ତାଙ୍କ ଅନୁଚରମାନଙ୍କୁ ଏ ଦ୍ୱୀପକୁ ଆଣି, ସେମାନଙ୍କ ସହାୟତାରେହିଁ ବ୍ୟାଘ୍ରଚର୍ମଧାରୀମାନଙ୍କୁ ଜବଦ କରିବାକୁ ହେବ ।"

"ଆମ ରାଜ୍ୟରୁ ରାକ୍ଷସମାନଙ୍କୁ କାନ୍ଧରେ ବସାଇ ଏ ଦ୍ୱୀପକୁ ନେଇ ଆସିବା ଭଲ

ପକ୍ଷୀ ଆପଣଙ୍କଠିଁ ଅଛନ୍ତି ?" ଉଗ୍ରଦତ୍ତ ପଚାରିଲେ ।

"ନା, ସେତେ ବଡ଼ ରାକ୍ଷସମାନଙ୍କୁ ଆମ ପକ୍ଷୀମାନେ ଆଣିପାରିବେ ନାହିଁ । ନୌକା-ରେହିଁ ସମସ୍ତେ ଆସିବେ ।" କନ୍ଧ କହିଲା ।

"କିନ୍ତୁ ନୌକା ଆପଣଙ୍କ ଏ ଦ୍ୱୀପର ତୀରରେ ଆସି ନିରାପଦରେ ଲାଗିପାରିବ କି ? ମୁଁ ଆକାଶମାର୍ଗରେ ଥାଇ ଦେଖିଲି, ଏ ଦ୍ୱୀପ ତୀରପାଖରେ ଆଗ୍ନେୟଗିରି । ସେଥିରୁ ପ୍ରାୟ ନିଆଁ ଧୂଆଁ ନିର୍ଗତ ହେଉଛି ।" ଉଗ୍ରଦତ୍ତ ଆଶଙ୍କା ପ୍ରକାଶ କରି କହିଲେ ।

କନ୍ଧ ହସିଲା ଓ ଆଶ୍ୱାସନା ଦେଇ କହିଲା, "ତମ ଆଶଙ୍କା ଭୁଲ ନୁହେଁ । କିନ୍ତୁ ନିରାପଦ ସ୍ଥାନ ମଧ୍ୟ ଆମ ଦ୍ୱୀପରେ ଅଛି । ସମସ୍ୟା ସେଠାରେ ନାହିଁ । ଏକପାଦର ଦୁର୍ଗ ଘେରିବା ସମୟରେ ଯାଇ ଅସଲ ସମସ୍ୟା ଦେଖାଦେବ । ତାକୁ ବନ୍ଦୀ କଲେ ମଧ୍ୟ ସମସ୍ୟାର ଶେଷ ହେବ ନାହିଁ । ତାକୁ ମାରିବା ସହଜ ନୁହେଁ ।"

କନ୍ଧର କିଛି କଥା ଉଗ୍ରଦତ୍ତ ବୁଝିପାରିଲେ ତ ଆଉ କିଛି କଥା ବୁଝିପାରିଲେ ନାହିଁ । ବନ୍ଦୀ ହେବା ପରେ ବି କନ୍ଧ କି ପ୍ରକାର ସମସ୍ୟା ସୃଷ୍ଟି କରିବ ?

ଉଗ୍ରଦତ୍ତଙ୍କୁ କନ୍ଧ ଗୋଟିଏ ସୁଡ଼ଙ୍ଗ ପଥରେ ଏକ ପାହାଡ଼ ଉପରକୁ ନେଇଗଲା ଓ କହିଲା, "ଦେଖ, ଦୂରରେ ଏକପାଦର ଦୁର୍ଗ ଦିଶୁଛି । ସେ ଦୁର୍ଗ ଭୀଷଣ ଆଗ୍ନେୟଗିରି ସବୁର ମଝିରେ ଅବସ୍ଥିତ । ସେଠାକୁ ଯାଇ ଦୁର୍ଗ ଅବରୋଧ କରିବା ସହଜ ନୁହେଁ । ଯଦି ଆମେ ଦୁର୍ଗ ଅବରୋଧ କରି ତାକୁ ବନ୍ଦୀ କରିବୁ, ତଥାପି ତାକୁ ମାରିବା ସହଜ ନୁହେଁ ।"

"କାହିଁକି ?" ଉଗ୍ରଦତ୍ତ ପଚାରିଲେ ।

"ତା' ପାଖରେ ଗୋଟିଏ ଅଦ୍ଭୁତ ଶକ୍ତି ଅଛି । ସେ ଯଦି କାହାର ରକ୍ତ ଦେଖିବ ସେ ଲୋକ ମରିଯିବ । ତା' ରକ୍ତ ଯିଏ ଦେଖିବ, ସେ ଲୋକ ବି ମରିଯିବ ।" କନ୍ଧ ଜଣାଇଲା ।

(କ୍ରମଶଃ)





# ବିଚିତ୍ର ସେବକ

ନିଶା ଗରଜୁଥାଏ। ଝୁହାଲୁ ଝୁହା ବର୍ଷା ହେଉଥାଏ। ଶୀତଳ ପବନରେ ଗଛଲତାମାନେ ଥରି ଯାଉଥାନ୍ତି। ଘଡ଼ଘଡ଼ି ଓ ଶ୍ୱାନଶ୍ୱାପଦଙ୍କ ରଡି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ। ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ। ତେବେ ତା'ପରେ ତାକୁ କାନ୍ଧରେ ପକାଇ ସେହି ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା, ତମେ ନିଜ ଜୀବନ ବିପନ୍ନ କରି କିସାର୍ଥରେ ଯେ ଏଭଳି ଦୁଃସାହସିକ

## ବେତାଳ କଥା



କାମ ହାତକୁ ନେଉଛ, ଏହା ପଛରେ ହୁଏତ କୌଣସି ବୁଦ୍ଧିମାନ ବ୍ୟକ୍ତିର ପରାମର୍ଶ ରହିଛି। ହୁଏତ ଆଜି ତା' ପ୍ରତି ତୁମର ଆସ୍ଥା ଯୋଗୁଁ ତୁମେ ସେ କହିବା ଅନୁସାରେ କାମ କରୁଛ। କିନ୍ତୁ ସବୁଦିନ ତୁମେ ତା' ପ୍ରତି ସେହିଭଳି ଆସ୍ଥା ରଖିପାରିବ ତ? ମୋ ପ୍ରଶ୍ନର ତାତ୍ପର୍ଯ୍ୟ ସରଳ କରିଦେବା ନିମନ୍ତେ ତୁମକୁ ଗୋଟିଏ କାହାଣୀ କହୁଛି, ମନଦେଇ ଶୁଣ। ଶୁଣିଲେ ଶ୍ରମଭାର ଲାଘବ ମନେ ହେବ।

ବେତାଳ ଗପିଲା: ଚନ୍ଦ୍ରଶୀଳ ନଗରୀରେ ରାଜୁତି କରୁଥାନ୍ତି ରାଜା କମଳଦେବ। ଉଆସରେ ରାଜାଙ୍କ ବ୍ୟକ୍ତିଗତ ସେବକମାନଙ୍କ ଭିତରେ ବିଜୟ ବୋଲି ଜଣେ ଲୋକ ଥିଲା। ବିଜୟ ସହ ଯିଏ କଥାବାର୍ତ୍ତା କରୁଥିଲା, ସିଏ ବୁଝୁଥିଲା ଯେ ବିଜୟ ଅସାଧାରଣ ବୁଦ୍ଧିମାନ। କିନ୍ତୁ ରାଜା ତାଙ୍କର ଜଣେ ପରିଚାରକ ସହ କଥାବାର୍ତ୍ତା ବା କାହିଁକି କରନ୍ତେ?

ଦିନେ ରାଜା ଚିନ୍ତିତ ହୋଇ ଏକା ବସିଥାନ୍ତି, ସେତିକିବେଳେ ବିଜୟ ତାଙ୍କ ପାଇଁ ଅଙ୍ଗୁର ରସ ଧରି ଆସିଲା। ସୁନା ଗିଲାସଟି ଫେରାଇ ନେବାବେଳେ ସେ ନମ୍ର ଭାବରେ ପଚାରିଲା, "ମହାରାଜଙ୍କ ଦେହ ଭଲ ଅଛି ତ?

ରାଜା ସେତେବେଳେ କାହା ସହିତ କଥା କହିବାକୁ ଲୋଡ଼ୁଥିଲେ। ସେ କହିଲେ, "ଦେହ ଭଲ ଅଛି ଯେ ମନ ଭଲ ନାହିଁ। ରାଜ୍ୟରେ ଗୋଟାଏ ଡାକୁ ମାତିଛି। ସେ ଅନେକ ଧନୀ ଲୋକଙ୍କ ଘରୁ ଚୋରି କଲାଣି। ସୁନା ତିଆରି ଜିନିଷ ଉପରେ ତା'ର ଅଧିକ ଲୋଭ। ମୋ ପ୍ରହରୀମାନେ ତାକୁ ଧରିପାରୁ ନାହାନ୍ତି। ଆଚ୍ଛା ବିଜୟ, ତମେ ରାଜା ହୋଇଥିଲେ କ'ଣ କରନ୍ତେ?" ରାଜା ହାଲୁକା ଭାବରେ ଏ ପ୍ରଶ୍ନ ପଚାରିଦେଲେ।

କିନ୍ତୁ ବିଜୟ ଧୀର କଣ୍ଠରେ କହିଲା, "ମହାରାଜ, ମୁଁ ରାଜା ହୋଇଥିଲେ ଏଇଆ କରନ୍ତି: ଆମ ରାଜଧାନୀକୁ ଲାଗି କରି ଉତ୍ତର ଦିଗରେ ଯେଉଁ ଭଙ୍ଗା ଦେଉଳ ପଡ଼ିଛି, ସେଇଠି କୋଡ଼ିଏ ତିରିଶ ମୂଲିଆ ଲଗାଇ ଖନନ କାମ ଆରମ୍ଭ କରନ୍ତି। ପ୍ରଚାର କରି ଦିଅନ୍ତି ଯେ ମାଟି ତଳେ ସୁନାର ମୂର୍ତ୍ତି ରହିଛି। ତାକୁ

ନିଶ୍ଚୟ ମୂଲିଆ ଛଦ୍ମବେଶରେ ଆସି ଦିନେ ସେଠାରେ ପହଞ୍ଚିବ ଓ ମୂର୍ତ୍ତି ବାହାରିବା ମୁହୂର୍ତ୍ତକୁ ଅପେକ୍ଷା କରିବ । ଆମେ ନିଯୁକ୍ତ କରିଥିବା ମୂଲିଆମାନଙ୍କୁ ଆମେ ଭଲ କରି ଚିହ୍ନିଥିବା ଦରକାର । ଅତଏବ ଜଣେ ଅପରିଚିତ ଲୋକକୁ ଚିହ୍ନଟ କରିବା ଅସୁବିଧା-ଜନକ ହେବ ନାହିଁ ।"

ରାଜା ବିଜୟର ଏ ପରାମର୍ଶ ଶୁଣି ଯେତିକି ବିସ୍ମିତ ହେଲେ, ସେତିକି ଆନନ୍ଦିତ ହେଲେ । ପରାମର୍ଶ ଅନୁସାରେ ସେ କାମ କଲେ ଓ ସପ୍ତାହକ ପରେ ସତକୁ ସତ ମୂଲିଆର ଛଦ୍ମବେଶ ପକାଇ ଆସିଥିବା ଡାକୁ ଓ ତା'ର ଜଣେ ସହକାରୀ ଧରା ପଡ଼ିଲେ । ରାଜାଙ୍କ ଆନନ୍ଦ କହିଲେ ନ ସରେ ।

ଏହାର ଦୁଇ ତିନିମାସ ପରେ ରାଜାଙ୍କ ଆଗରେ ଦେଖାଦେଲା ଏକ ନୂତନ ସମସ୍ୟା । ତାଙ୍କ ରାଜ୍ୟ ଚନ୍ଦ୍ରଶୀଳାକୁ ଲାଗିଥିଲା କପାଳପୁର ରାଜ୍ୟ । କପାଳପୁର ଚନ୍ଦ୍ରଶୀଳା ତୁଳନାରେ ବଡ଼ ରାଜ୍ୟ ଥିଲା ଓ ସେଠାକାର ସୈନ୍ୟବାହିନୀ ମଧ୍ୟ ଖୁବ୍ ଶକ୍ତିଶାଳୀ ଥିଲେ । କପାଳପୁରର ରାଜା ଚନ୍ଦ୍ରଶୀଳା ରାଜ୍ୟ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଛନ୍ତି ବୋଲି ରାଜା କମଳଦେବ ଖବର ପାଇଲେ ଓ ବିଶେଷ ଚିନ୍ତିତ ହେଲେ ।

ସେ ଯାଇ ଦେଖିଲେ ବିଜୟ ତାଙ୍କ ଅନ୍ତଃପୁର ପାଖ ଉଦ୍ୟାନରେ ପାଣି ଦେଉଛି । ସେ ତାକୁ ଡକାଇଲେ ଓ ନିଜ ସମସ୍ୟା କଥା କହି ପଚାରିଲେ, "ବିଜୟ, ତମେ ମୋ ସ୍ଥାନରେ ଥିଲେ କ'ଣ କରିଥାନ୍ତ ?"





ବଜ୍ରସ୍ତ୍ର କହିଲା, "ମହାରାଜ, କପାଳପୁର ଆମ ରାଜ୍ୟ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଛି ବୋଲି ଆଶତ୍ରୁର ସମ୍ବାଦ ମିଳୁଛି । ଏହା ଆମର ସୌଭାଗ୍ୟ । ଆପଣ ତ ଜାଣନ୍ତି, କପାଳପୁରରୁ ଚନ୍ଦ୍ରଶୀଳ ଭିତରକୁ ପଶି ଆସିବା ନିମନ୍ତେ ଗୋଟିଏ ମାତ୍ର ରାସ୍ତା ରହିଛି । ତାହା ପାର୍ବତ୍ୟ ରାସ୍ତା । ସେହି ରାସ୍ତାରେ କପାଳପୁରର ସୈନ୍ୟବାହିନୀ ଆସିବେ । ଆମ ସୈନ୍ୟମାନେ ଅଳ୍ପ ସଂଖ୍ୟାରେ ଘାଟି ରାସ୍ତା ଆଗରେ ଜଗି ରହିବେ । କପାଳପୁରର ସୈନ୍ୟବାହିନୀ ଆସିବା ମାତ୍ରେ ଲଢ଼େଇ କରିବେ । ଆମ ସୈନ୍ୟ ସହଜରେ ପରାସ୍ତ ହେବେ । ଆନନ୍ଦରେ କପାଳପୁର ସୈନ୍ୟ ଘାଟି ଭିତର ଦେଇ ମାଡ଼ି ଆସିବେ । ଆମ ସୈନ୍ୟଦଳର ଅଧିକାଂଶ କିନ୍ତୁ ସେ ପାହାଡ଼ ସବୁ ଉପରେ ରହିଥିବେ । ସେମାନେ ଭୀଷଣ ପଥରମାଡ଼ ଆରମ୍ଭ କରିବେ । ବଡ଼ ବଡ଼ ଶିଳ ଖଣ୍ଡମାନ ଉପରେ ପ୍ରସ୍ତୁତ କରି ରଖିଥିବେ; ଗଡ଼ାଇ ଦେବେ । ଶତ୍ରୁ ପକ୍ଷର ଯେତିକି ସୈନ୍ୟ ଘାଟି ଟପି ଏ ପାଖରେ ପହଞ୍ଚିବେ, ସେମାନଙ୍କୁ ଏ ପାଖରେ ଥିବା ଆମ ସୈନ୍ୟମାନେ ବନ୍ଦୀ କରିନେବେ ।"

ରାଜାଙ୍କୁ ଏ ପ୍ରସ୍ତାବ ବେଶ୍ ଯୁକ୍ତିଯୁକ୍ତ ମନେ ହେଲା । ସେ ସେହି ଅନୁସାରେ ପ୍ରସ୍ତୁତ ହୋଇ ରହିଲେ ଓ କପାଳପୁରର ଆକ୍ରମଣକାରୀ ସୈନ୍ୟଦଳକୁ ପରାସ୍ତ କଲେ । ବନ୍ଦୀ ସୈନ୍ୟମାନଙ୍କୁ ଖଲାସ କରିବା ନିମନ୍ତେ କପାଳପୁର ବହୁତ କ୍ଷତିପୂରଣ ଦେଲା ।

ରାଜା ଦିନେ ବଜ୍ରସ୍ତ୍ରଙ୍କୁ ଡାକି କହିଲେ, "ବଜ୍ରସ୍ତ୍ର, ତମ ଭଳି ଚତୁର ଓ ଦକ୍ଷ ବ୍ୟକ୍ତି ମୋର ସେବକ ହୋଇ ରହିବା ଠିକ୍ ନୁହେଁ । ତମେ ମୋର ପରାମର୍ଶଦାତା ରୂପେ ରୁହ ।"

"ମହାରାଜ, ଆପଣ ଜଣେ ସାମାନ୍ୟ ସେବକର ପରାମର୍ଶରେ କାମ କରୁଛନ୍ତି, ଏକଥା କେହି ନ ଜାଣିବା ଉଚିତ । ମୁଁ ଯେମିତି ଅଛି, ଆପଣ ମୋତେ ସେମିତି ରହିବାକୁ ଦିଅନ୍ତୁ ।" ବଜ୍ରସ୍ତ୍ର କହିଲା ।

ରାଜା ଆଉ କିଛି କହିଲେ ନାହିଁ । ଏହାର କିଛିଦିନ ପରେ ଦେଖାଦେଲା ଆଉ ଏକ

ପ୍ରବଳ ସମସ୍ୟା । ରାଜ୍ୟ ସୀମାନ୍ତରେ ଥିବା ବଣ ଭିତରେ ଗୋଟିଏ ଦୁର୍ଦ୍ଦାନ୍ତ ରାକ୍ଷସ ଆସି ଦେଖା ଦେଲା । ବାଟରେ ଯାଉଥିବା ଲୋକଙ୍କୁ ସେ ଖାଲି ଯେ ଗ୍ରାସ କରୁଥାଏ, ତାହା ନୁହେଁ, ସେମାନଙ୍କୁ ନାନା ପ୍ରକାରେ କଲବଲ କରୁଥାଏ । ସେ ନିଷ୍ଠୁର ପ୍ରକୃତିର ରାକ୍ଷସ । ସଙ୍ଗେ ସଙ୍ଗେ ଭୀଷଣ ଗର୍ବୀ । ସେ ସମସ୍ତଙ୍କୁ କହୁଥାଏ ଯେ ସେ ରାଜାଠୁଁ ବଡ଼ ।

ରାକ୍ଷସ ବିଷୟରେ ରାଜା କମଳଦେବ ବିଜୟଙ୍କୁ କହିଲେ । ବିଜୟ ଏ ବିଷୟରେ ରାଜାଙ୍କୁ ଗୋଟାଏ ପରାମର୍ଶ ଦେଲା । ରାଜା ତାହା ଗ୍ରହଣ କରି ନିଜେ ରଥ ଚଢ଼ି ବଣ ଅଭିମୁଖେ ଚାଲିଲେ । ବଣ ବାହାରେ ରଥ ରଖି ସେ ଭିତରକୁ ଗଲେ ଓ ଅନେକ ସମୟ ଏକାକୀ ବୁଲିବା ପରେ ରାକ୍ଷସକୁ ଭେଟିଲେ ।

"ମୁଁ ତମକୁ ଖୋଜୁଛି !" ସେ କହିଲେ ।

ରାକ୍ଷସ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ଏଡ଼େ ସାହସ ? ତମେ କିଏ ?"

"ମୁଁ ଏ ରାଜ୍ୟର ରାଜା । ତୁମକୁ ଦୁଇଟି କଥା କହିବାକୁ ଆସିଛି । ତମେ ଯାହାକୁ ପାଉଛ ଧରି ଖାଇ ଯାଉଛ । ସେଥିରେ ଲୋକେ ଭୟରେ ଏଆଡ଼େ ଆସୁ ନାହାନ୍ତି । ବଣ ସେପାଖରେ ଥିବା ଅଞ୍ଚଳ ସହିତ ବେପାର ବଣିଜ ହୁଏ । ତାହା ବନ୍ଦ ହୋଇ ଗଲାଣି । ମୁଁ ବରଂ ସବୁଦିନେ ଯୋଡ଼ଏ ଲେଖାଏଁ ମୋଟା ଲୋକ ତମ ପାଖକୁ ପଠାଇ ଦେବି । ତମେ ଖାଇବ । ଯାହାକୁ ତାହାକୁ ଧରିବ





ନାହିଁ। ଏହା ପ୍ରଥମ କଥା।" ରାଜା କହିଲେ।

"ହଉ, ଦେଖିବା। ଦ୍ୱିତୀୟ କଥା କ'ଣ?" ରାକ୍ଷସ ଗର୍ବିତ ହୋଇ ପଚାରିଲା।

"ତମେ ନିଜକୁ ମୋଠୁଁ ବଡ଼ ବୋଲି କହୁଛ। ଖାଲି କହିଲେ ତ ହେବ ନାହିଁ, ସେକଥା ପ୍ରମାଣ କରିବାକୁ ପଡ଼ିବ। ତେଣିକି ମୁଁ ନିଜେ ସ୍ୱୀକାର କରିବି ଯେ ତମେ ମୋଠୁଁ ବଡ଼।" ରାଜା କହିଲେ।

"କିପରି ପ୍ରମାଣ ଚାହିଁ?" ରାକ୍ଷସ ଉତ୍ସାହରେ ପଚାରିଲା।

"ବଣ ବାହାରେ ଗୋଟିଏ ସରୋବର ଅଛି। ଡାକୁମାନେ ସୁନାଟଙ୍କା ଭର୍ତ୍ତି ଗୋଟିଏ ସିନ୍ଦୁକ ଉଆସରୁ ଚୋରି କରି ସେ ସରୋବର ମଝିକୁ ଫୋପାଡି ଦେଇଛନ୍ତି। ମୁଁ ତାକୁ ବାହାର କରି ପାରିଲି ନାହିଁ। ତମେ ଯଦି ପାରିବ, ତେବେ ତମେ ମୋଠୁଁ ବଡ଼ ବୋଲି ପ୍ରମାଣ ହୋଇଯିବ।" ରାଜା କହିଲେ।

ରାକ୍ଷସ ରାଜି ହୋଇ ରାଜାଙ୍କ ସହ ସରୋବର ଆଡ଼େ ଚାଲିଲା ଓ ହଠାତ୍ ଲଂଫ ଦେଇ ସରୋବର ମଝିକୁ ଡେଇଁ ପଡ଼ିଲା। ସେ ସରୋବରର ବିଶେଷତ୍ୱ ହେଲା, ତହିଁ ମଝିରେ ଭୀଷଣ ପଙ୍କ। ଅଠା ଭଳି। ସେଥିରେ ଥରେ ପଡ଼ିଗଲେ କେହି ବାହାରି ଆସି ପାରନ୍ତି ନାହିଁ। ରାକ୍ଷସର ଗତି ବି ସେଇଆ ହେଲା। ସେ ମଲା।

ଏହାର କିଛିଦିନ ପରେ ରାଜା ବିଜୟକୁ ଡାକି ଏକାନ୍ତରେ ପଚାରିଲେ, "ବିଜୟ, ମୋ କର୍ମଚାରୀମାନଙ୍କ ଭିତରେ ଦୁର୍ନୀତି ବ୍ୟାପିଛି। କିଭଳି ଉପାୟରେ ତାହା ବନ୍ଦ କରାଯିବ?"

"ମହାରାଜ, ମୁଁ ଜଣେ ସାମାନ୍ୟ ସେବକ। ମୁଁ ଏହାର କି ପ୍ରତିକାର କହିବି? ଆପଣ ନିଜେ ଚିନ୍ତା କରି, ତତ୍ପର ହୋଇ ଏ ଅବସ୍ଥା ସୁଧାରିବା ଆବଶ୍ୟକ। ମୋତେ କ୍ଷମା କରନ୍ତୁ। ମୁଁ କିଛି କହିପାରିବି ନାହିଁ।" ବିଜୟ କହିଲା।

ରାଜା ଗମ୍ଭୀର ହୋଇ କହିଲେ, "ତମେ ଯଦି ମୋତେ ପରାମର୍ଶ ନ ଦେବ, ତେବେ ତମର ଏଠାରେ ରହିବା ଦରକାର ନାହିଁ। ତମକୁ ଦଣ୍ଡ ଦେବି। ରାଜ୍ୟ ସୀମାନ୍ତରେ ସମୀରଗଡ଼ ତାଲୁକରେ ଦୁର୍ଦ୍ଦାନ୍ତ, ବଣୁଆ

ଲୋକେ ବସବାସ କରନ୍ତି । ମୁଁ ଯେଉଁ କର୍ମଚାରୀମାନଙ୍କୁ ଦଣ୍ଡ ଦେବାକୁ ଚାହେଁ, ସେମାନଙ୍କୁ ସେଠାରେ ଥିବା ମୋ କୋଠିକୁ ପଠାଇ ଦିଏଁ । ତମେ ଯାଇ ସେ କୋଠିର ଦାୟିତ୍ୱ ନିଅ ।"

ବେତାଳ କାହାଣୀଟି ଏହିଠାରେ ବନ୍ଦ ରଖି କଠୋର କଣ୍ଠରେ ରାଜା ବିକ୍ରମାର୍କଙ୍କୁ ପଚାରିଲା, "ରାଜା, ମୋର କେତେକ ସନ୍ଦେହ ରହିଛି । ବିଜୟ ବରାବର ରାଜାଙ୍କୁ ସତ୍ ପରାମର୍ଶ ଦେଉଥିଲା । ହଠାତ୍ ସେ କାହିଁକି ପରାମର୍ଶ ଦେବାରୁ କ୍ଷାନ୍ତ ହେଲା ? ରାଜା ତା' ପ୍ରତି କୃତଜ୍ଞ ହେବା ପରିବର୍ତ୍ତେ ତାକୁ ଦଣ୍ଡ ଦେଲେ କାହିଁକି ? ରାଜା, ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, "ବିଜୟ ଓ ରାଜାଙ୍କ ଭିତରେ କୌଣସି ଭୁଲ୍ ବୁଝାମଣା ହୋଇ ନାହିଁ । ବିଜୟ ଖାଲି ବୁଦ୍ଧିମାନ ନୁହେଁ, ବିବେକୀ । ସେ ଦେଖିଲା, ରାଜା ଏଣିକି ସବୁ କଥାରେ ତା' ବୁଦ୍ଧି ଉପରେ ନିର୍ଭର କରୁଛନ୍ତି । ଫଳରେ ରାଜା ନିଜେ ସମସ୍ୟା ସବୁର ସମାଧାନ ଦିଗରେ ଚିନ୍ତା କରୁ ନାହାନ୍ତି । ଏହା ରାଜାଙ୍କ ପକ୍ଷରେ ଅନୁଚିତ । ତେଣୁ ସେ ପରାମର୍ଶ ଦେବାରୁ କ୍ଷାନ୍ତ ହେଲା । ରାଜା ତାକୁ ସମୀରଗଡ଼ ତାଲୁକକୁ ପଠାଇ ଦଣ୍ଡ ଦେଇ ନାହାନ୍ତି, ଦଣ୍ଡ ଦେବା ଆଳରେ ତାକୁ ବଡ଼ କର୍ମଚାରୀ ପଦ ଦେଲେ । ନିଜ ଉଆସରେ ସାଧାରଣ ସେବକକୁ ହଠାତ୍ ବଡ ପଦ ଦେବା ଅନେକଙ୍କ ଆଖିକୁ ଭଲ ଦିଶନ୍ତା ନାହିଁ । ତେଣୁ ରାଜା ତାକୁ ଦୂରକୁ ପଠାଇଦେଇ ନିଜେ ବିବେକୀ ବୋଲି ପ୍ରମାଣ ଦେଲେ ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)





# ରାମଦାସର ଚାବି

ଶିବପୁରର ଶ୍ରୀଧର ଭଙ୍ଗା ତାଲା ମରାମତି କରିବାରେ ଏବଂ ଗୋଟାଏ ଚାବିକାଠି ଦେଲେ ଅବିକଳ ସେହିପରି ଅନ୍ୟ ଚାବିକାଠି ତିଆରି କରିଦେବାରେ ନିପୁଣ ଥିଲା ।

ଦିନେ ରାମଦାସ ନାମକ ଲୋକଟିଏ ଆସି ତାକୁ ଗୋଟାଏ ଚାବିକାଠି ଦେଇ ସେହିପରି ଅନ୍ୟ ଗୋଟାଏ ଚାବିକାଠି ତିଆରି କରିଦେବାକୁ ଅନୁରୋଧ କଲା । ଶ୍ରୀଧର କହିଲା, "ବେଶ । ଆଗାମୀ କାଲି ଆସି ନେଇଯିବ ।"

ପରଦିନ ରାମଦାସ ଆସି ପହଞ୍ଚିବା ମାତ୍ରେ ଶ୍ରୀଧର ଚାବିକାଠି ସହ ନକଲ ଚାବିକାଠିଟି ତାକୁ ଦେଇଦେଲା । ରାମଦାସ ନୂଆ ଚାବିକାଠି ଆଡ଼େ ସନ୍ଦିଗ୍ଧ ଭାବରେ ଅନାଇ କହିଲା, "ଏଇଟା ଠିକ୍ କାମ ଦେବ ତ ?"

ଶ୍ରୀଧର କହିଲା, "ଆରେ ଭାଇ, ମୁଁ ତିଆରି କରିଦେଇଥିବା ନକଲ ଚାବିକାଠି ମୂଳ ଚାବିକାଠି ଭଳି କାମ କରି ନାହିଁ, ଏମିତି କଥା କେବେ ଶୁଣିଛ ?"

ରାମଦାସ ଟିକିଏ ଅତମତ କରି କହିଲା, "ମାନେ, ମୂଳ ଚାବିକାଠି କାମ କରୁନାହିଁ ବୋଲି ତ ଆଉ ଗୋଟାଏ ତିଆରି କରାଇଲି ।"

ଶ୍ରୀଧର ଆଉ କହିବ କ'ଣ ? ରାମଦାସ ଆଡେ ଜଳଜଳ ଅନାଇ ରହିଲା ।



# "ଜହ୍ନମାମୁଁ"ର ସାନନ୍ଦ ନିମନ୍ତ୍ରଣ

## ମହାନ ଭାରତୀୟ ଐତିହ୍ୟ ଉପରେ ପ୍ରଶ୍ନ

### ତିନି ପର୍ଯ୍ୟାୟରେ

**ପ୍ରତିଯୋଗିତା—୧**

ଭାରତର ବିଖ୍ୟାତ ନରପତି ବୃନ୍ଦ



**ପ୍ରତିଯୋଗିତା—୨**

ଭାରତର ବିଖ୍ୟାତ ରାଣୀ ବୃନ୍ଦ



**ପ୍ରତିଯୋଗିତା—୩**

ଭାରତର ବିଖ୍ୟାତ ଯୁଗ



**୧,୩୦,୦୦୦ ଟଙ୍କା ମୂଲ୍ୟରୁ ଊର୍ଦ୍ଧ୍ୱ ପୁରସ୍କାର ବିତରିତ ହେବ !**

୧୧ ଟି ଭାଷାରେ ପ୍ରତିଯୋଗିତା ପାଇଁ ଅଲଗା ଅଲଗା ପୁରସ୍କାର

୧୧ଟି ପ୍ରଥମ ପୁରସ୍କାର : ୨୦୦୦ ଟଙ୍କାର ବୃତ୍ତି
୧୧ଟି ଦ୍ୱିତୀୟ ପୁରସ୍କାର : ୧୦୦୦ ଟଙ୍କାର ବୃତ୍ତି
୧୧ଟି ତୃତୀୟ ପୁରସ୍କାର : ୫୦୦ ଟଙ୍କାର ବୃତ୍ତି

**ଏହାଛଡ଼ା ବିଶିଷ୍ଟ ପୁରସ୍କାର**

୧ମ ବିଶିଷ୍ଟ ପୁରସ୍କାର: ୧୦,୦୦୦ ଟଙ୍କାର ବୃତ୍ତି
୨ୟ ବିଶିଷ୍ଟ ପୁରସ୍କାର: ୫୦୦୦ ଟଙ୍କାର ବୃତ୍ତି
୩ୟ ବିଶିଷ୍ଟ ପୁରସ୍କାର: ୨୫୦୦ ଟଙ୍କାର ବୃତ୍ତି
*ପାଞ୍ଚବର୍ଷରେ ତାହାଟି ସମାନ କିସ୍ତିରେ ପ୍ରଦତ୍ତ ହେବ
ଆହୁରି ମଧ୍ୟ ୨୨୦ଟି ସାନ୍ତ୍ୱନା ପୁରସ୍କାର—

# ପ୍ରତିଯୋଗିତାରେ କିପରି ଭାଗ ନେବ

ନିଜର ଇତିହାସ ଜାଣ, ପୁରୁଣା ଜହ୍ନମାମୁଁ ସବୁ ପଢ଼ିବାଭଳି ସମସ୍ତଙ୍କୁ ନେଇ ବସିଯାଅ ।
ଏଠାରେ ଭାରତର ପୁରାଣ ଓ ଇତିହାସର ପ୍ରଖ୍ୟାତ ବ୍ୟକ୍ତିମାନଙ୍କ ଛବି ଦିଆଯାଇଛି । ସେମାନଙ୍କୁ ଚିହ୍ନିବା ପାଇଁ ଛବିରେ କିଛି ସଙ୍କେତ ଦିଆଯାଇଛି । ସେ ସଙ୍କେତ ଅନୁସରଣ କରି କର୍ଣ୍ଣିକ ଚତୁଷ୍କୋଣରେ ଠିକ୍ ସଂଖ୍ୟାଗୁଡ଼ିକ ଲେଖିଦିଅ । ତା'ପରେ ଉପରୋକ୍ତ ବ୍ୟକ୍ତିଙ୍କ ଭିତରୁ ଜଣଙ୍କୁ ବାଛି ନିଅ । ପର ପୃଷ୍ଠାରେ ଥିବା ବାକ୍ୟର ଅପୂର୍ଣ୍ଣ ଅଂଶକୁ ଖାଲିଥିବା ସ୍ଥାନରେ ପୂରଣ କର । ପଚିଶରୁ ଅଧିକ ଶବ୍ଦ ବ୍ୟବହାର କରିବ ନାହିଁ । ନିଜ ଉତ୍ତର ଯେପରି ସୁନ୍ଦର ହୁଏ ! କାରଣ ସବୁଠୁଁ ଭଲ ଉତ୍ତର ପାଇଁ ପୁରସ୍କାର ମିଳିବ ।
ତୁମ ନାମ, ଠିକଣା ଓ ବୟସ କର୍ଣ୍ଣିକ ସ୍ଥାନରେ ଲେଖି ପୃଷ୍ଠାଟି କାଟି ଆମ ପାଖକୁ ଡାକରେ ପଠାଅ ।
ଏହାର ଫଳ ଘୋଷଣା ହେବା ପୂର୍ବରୁ ଦ୍ୱିତୀୟ ପ୍ରତିଯୋଗିତାର ଘୋଷଣା ପାଇଁ 'ଜହ୍ନମାମୁଁ'ର ପରବର୍ତ୍ତୀ ସଂଖ୍ୟାକୁ ଅପେକ୍ଷା କର ।

# ନିୟମାବଳୀ

୧. ୧୬ ବର୍ଷରୁ କମ ବୟସ୍କ ସମସ୍ତ ବାଳକବାଳିକାଙ୍କ ପାଇଁ ଏ ପ୍ରତିଯୋଗିତା ଉଦ୍ଦିଷ୍ଟ । ଜଣେ ଯେତେ ସଂଖ୍ୟାରେ ଇଚ୍ଛା ସେତେ ସଂଖ୍ୟାରେ ଫର୍ମ ପୂରଣ କରିପାରିବେ—କିନ୍ତୁ 'ଜହ୍ନମାମୁଁ'ରେ ଥିବା ଫର୍ମ ହେବା ଦରକାର ।

୨. ଜଣେ ଗୋଟିଏ ବା ଏକାଧିକ ପର୍ଯ୍ୟାୟର (ଭାରତର ପ୍ରଖ୍ୟାତ ନାରୀ, ପ୍ରଖ୍ୟାତ ଋଷି ଓ ପ୍ରଖ୍ୟାତ ଯୋଦ୍ଧା) ପ୍ରତିଯୋଗିତାରେ ଭାଗ ନେଇପାରିବେ । ଜଣେ ପ୍ରତିଟିରେ ବି ୧ମ ପୁରସ୍କାର ପାଇବାକୁ ଭାଗ ନେଇପାରିବେ । ତତ୍ପରେ ସେ ଅନ୍ୟ ପ୍ରତିଯୋଗିତାରେ ମଧ୍ୟ ଭାଗ ନେଇପାରିବେ ।

୩. ଶୂନ୍ୟସ୍ଥାନ ଗୁଡ଼ିକରେ ଫର୍ମ ପୂରଣ ହେବା ଲୋଡ଼ା । 'ଜହ୍ନମାମୁଁ' ପ୍ରକାଶ ପାଉଥିବା ୧୧ଟିରୁ ଯେ କୌଣସି ଭାଷାରେ ।

୪. ଦ୍ୱିତୀୟ ପ୍ରତିଯୋଗିତା ପାଇଁ ପ୍ରବେଶିକା ଫର୍ମ ୩୦ ତାରିଖ ନଭେମ୍ବର ୧୯୮୭ ପୂର୍ବରୁ ଆମ ପାଖରେ ପହଞ୍ଚିବା ଦରକାର ।

୫. ପ୍ରବେଶିକା ଫର୍ମର ପହଞ୍ଚିବାରେ ବିଳମ୍ବ ବା ବାଟରେ ହଜିଯିବା ଅଥବା ନଷ୍ଟହେବା ପାଇଁ ସଂଗଠନ ଦାୟୀ ନୁହେଁ ।

୬. ପ୍ରବେଶିକା ଫର୍ମ ସାଧାରଣ ଡାକରେ ଆସିବା ଦରକାର ।

୭. କେବଳ ଚନ୍ଦାମାମା ପବ୍ଲିକେସନ୍ସ ଓ ହିନ୍ଦୁସ୍ଥାନ ଥମସନ୍ ଏସୋସିଏଟ୍ସର କର୍ମଚାରୀବୃନ୍ଦ ଓ ସେମାନଙ୍କ ପରିବାରବର୍ଗଙ୍କୁ ଛାଡ଼ି ଭାରତର ଯେ କୌଣସି ନାଗରିକ ଏଥିରେ ଅଂଶ ଗ୍ରହଣ କରିପାରିବେ ।

୮. ପ୍ରବେଶିକା ଫର୍ମ ସବୁ ଗୋଟିଏ ନିରପେକ୍ଷ ବିଚାରକମଣ୍ଡଳୀ ବିଚାର କରିବେ । ସେମାନଙ୍କ ସିଦ୍ଧାନ୍ତ ଚୂଡ଼ାନ୍ତ ପରିଗଣିତ ହେବ ।

୯. ବିଜେତାମାନଙ୍କ ନାମ 'ଜହ୍ନମାମୁଁ'ରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ ଡାକ ଯୋଗେ ମଧ୍ୟ ଜଣାଇ ଦିଆଯିବ ।

**ବିଶିଷ୍ଟ ପ୍ରତିଯୋଗିତା ପାଇଁ ବିଶେଷ ଘୋଷଣା**

ପ୍ରବେଶିକା ଫର୍ମ ଡାକରେ ପଠାଇବା ପୂର୍ବରୁ ସେଥିରୁ "ଜହ୍ନମାମୁଁ ପ୍ରତିଯୋଗିତା-୨" ଲେଖାଥିବା ଲେବେଲ କାଟି ରଖ । ୧ମ ଓ ୩ୟ ପ୍ରତିଯୋଗିତା ପାଇଁ ମଧ୍ୟ ତାହାହିଁ କର । ଡିସେମ୍ବର ସଂଖ୍ୟାରେ ବିଶିଷ୍ଟ ପ୍ରତିଯୋଗିତା ପ୍ରବେଶିକା ଫର୍ମ ଦେଖିବ । ଏ ତିନୋଟିଯାକ ଲେବେଲ ସେ ଫର୍ମ ଉପରେ ଲଗାଇବାକୁ ହେବ । ତେବେ ଯାଇ ବିଶିଷ୍ଟ ପ୍ରତିଯୋଗିତାରେ ଜଣେ ଭାଗ ନେଇ ପାରିବ ।

ଏ 'ଜହ୍ନମାମୁଁ' ଖଣ୍ଡିକ ସାଇତି ରଖ । ବିଶିଷ୍ଟ ପ୍ରତିଯୋଗିତା ସକାଶେ ପ୍ରଶ୍ନମାନ ସେପ୍ଟେମ୍ବର, ଅକ୍ଟୋବର ଓ ନଭେମ୍ବର ସଂଖ୍ୟା ଜହ୍ନମାମୁଁ ଉପରେ ଆଧାରିତ ହେବ ।

ତୁମେ ୧ମ ପ୍ରତିଯୋଗିତାରେ ଭାଗ ନେଇ ନଥିଲେ ମଧ୍ୟ ଏ ୨ୟ ପ୍ରତିଯୋଗିତାରେ ଭାଗ ନେଇ ପାରିବ । ଆଉ ମନେରଖ, ୧ମ ପ୍ରତିଯୋଗିତାରେ ଭାଗ ନେବାର ଡେରି ହୋଇଯାଇ ନାହିଁ । ଅକ୍ଟୋବର ୩୧ତା : ହେଉଛି ଶେଷ ତାରିଖ ।

# ପ୍ରତିଯୋଗିତା ୨

## (ପ୍ରବେଶିକା ଫର୍ମ)








ନମୂନା ଅବଲମ୍ବନ କରି ଏ ଛଅଜଣ ରାଣୀଙ୍କ ଛବି ସହ ନାମର ଯୋଗାଯୋଗ କରି ଛବିରେ ଥିବା ଧଳା ସ୍ଥାନରେ ଠିକ୍ ନମ୍ବରଟି ଲେଖ ।

| | | | | | |
|---|---|---|---|---|---|
| ମମତାଜ ମହଲ | ୧ | ପଦ୍ମିନୀ | ୪ | କୁନ୍ତୀ | ୭ |
| ନୂରଜାହାନ | ୨ | ରାଣୀ ଲକ୍ଷ୍ମୀବାଈ | ୫ | ରଜିଆ ସୁଲ୍ତାନା | ୮ |
| ସୀତା | ୩ | କିତ୍ତୁର ଚେନାମ୍ମା | ୬ | ଗାନ୍ଧାରୀ | ୯ |







ଏ ଲେବେଲ୍ ଖଣ୍ଡିକ ବିଶିଷ୍ଟ ପ୍ରତିଯୋଗିତା ପାଇଁ ରଖ
ଯେତେବେଳେ ବିଶିଷ୍ଟ ପୁରସ୍କାର ପାଇଁ ଉଦ୍ୟମ କରିବ (ଡିସେମ୍ବର ସଂଖ୍ୟା ଦେଖିବା ପରେ) ସେତେବେଳେ ଏ ଲେବେଲ୍ ଖଣ୍ଡିକ ପ୍ରତିଯୋଗିତା ଫର୍ମ ଉପରେ ଲଗାଇବାକୁ ହେବ ।

ଜହ୍ନମାମୁଁ ପ୍ରତିଯୋଗିତା

୨

## ପ୍ରତିଯୋଗିତା ୨ (ପ୍ରବେଶିକା ଫର୍ମ)

ବର୍ତ୍ତମାନ ବିପରୀତ ପୃଷ୍ଠାରେ ଥିବା ଛଅ ଛବିରୁ ଯେ କୌଣସି ଜଣେ ରାଣୀଙ୍କ ଛବି ବାଛ ଓ ନିମ୍ନୋକ୍ତ ବାକ୍ୟଟି ପୂରଣ କର । "କାରଣ" ଶବ୍ଦ ପରେ ପନ୍ଦରରୁ ଅଧିକ ଶବ୍ଦ ବ୍ୟବହାର କରିବ ନାହିଁ ।

"ମୁଁ ରାଣୀ ................................ଙ୍କୁ ସବୁଠୁଁ ଅଧିକ ପ୍ରଶଂସା କରେଁ, କାରଣ
................................................................................
................................................................................
................................................................................
................................................................................

ନାମ ................................................................................

ବୟସ ......... ଠିକଣା ................................................................

................................................................................

ଏ କାଗଜ ଖଣ୍ଡିକ କାଟି ନିଅ । 'ଚନ୍ଦମାମା ପ୍ରତିଯୋଗିତା-୨' ଲେଖାଥିବା କୁପନ୍ ଖଣ୍ଡିକ ପାଖରେ ରଖ । ପ୍ରବେଶିକା ଫର୍ମ ପଠାଇବା ବେଳେ ଲଫାଫା ଉପରେ "ପ୍ରତିଯୋଗିତା-୨" ବୋଲି ଉଲ୍ଲେଖ କରିବ । ପଠାଇବାର ଠିକଣା :

ଜହ୍ନମାମୁଁ ପ୍ରତିଯୋଗିତା ୨
ଚନ୍ଦାମାମା ପବ୍ଲିକେସନ୍ସ
୧୮୮ ଆର୍କୋଟ ରୋଡ୍
ମାଡ୍ରାସ ୬୦୦ ୦୨୬

ପ୍ରତିଯୋଗିତା ୧ ର ଶେଷ ତାରିଖ—୩୦ ନଭେମ୍ବର ୧୯୮୨

ଏ ଲେବେଲ ଖଣ୍ଡିକ ଭବିଷ୍ୟତ ପ୍ରତିଯୋଗିତା ପାଇଁ ରଖ

**ମହାନ ଭାରତୀୟ ଐତିହ୍ୟ ଉପରେ ପ୍ରଶ୍ନ**

# ଫତେପୁର ସିକ୍ରି

ଆଗ୍ରାର ଦକ୍ଷିଣ ପଶ୍ଚିମକୁ ଚାଳିଶ କିଲୋମିଟର ଦୂରରେ ଗୋଟିଏ ପାହାଡ଼ ଉପରେ ଅବସ୍ଥିତ ଫତେପୁର ସିକ୍ରି ଦୁର୍ଗ । ବାଦ୍‌ଶାହ୍‌ ଆକବର ଯେତେ ତ୍ୱରନ୍ତ ଏହାକୁ ନିର୍ମାଣ କରିଥିଲେ, ସେତେ ତ୍ୱରନ୍ତ ଏହାକୁ ପରିତ୍ୟାଗ ବି କଲେ । ଏ ବିଶାଳ ଦୁର୍ଗ ପରିତ୍ୟକ୍ତ ଭୂତଖାନା ଭଳି ପଡ଼ିଛି ସତ, କିନ୍ତୁ ଏହା ଦେଖିବା ଭଳି ଇମାରତ୍‌ ମାଳ ।





ଆକବର୍ ଭାରତର ଅନେକ ରାଜ୍ୟ ଜୟ କରିଥିଲେ, କିନ୍ତୁ ତାଙ୍କ ମନରେ ସୁଖ ନଥିଲା । କାରଣ ତାଙ୍କର ଉତ୍ତରାଧିକାରୀ କେହି ନଥିଲେ । ସିକ୍ରି ନାମକ ପାହାଡ଼ ଉପରେ ଶେଖ୍ ସାଲିମ୍ ଚିସ୍ତି ନାମକ ଜଣେ ସନ୍ଥ ଥିବା କଥା ଶୁଣି ସେ ଯାଇ ତାଙ୍କ ଆଶୀର୍ବାଦ ଭିକ୍ଷା କଲେ ।

ଏହାପରେ ଆକବର୍‌ଙ୍କ ହିନ୍ଦୁ ପତ୍ନୀ ଗୋଟିଏ ପୁତ୍ର ସନ୍ତାନ ଜନ୍ମ ଦେଲେ । ଆକବର ତା' ନାମ ସେ ସନ୍ଥଙ୍କ ନାମାନୁସାରେ ରଖିଲେ ସାଲିମ୍ । ଏହି ଶିଶୁ ଭବିଷ୍ୟତରେ ଜାହାଙ୍ଗୀର ନାମରେ ଖ୍ୟାତ ହେଲେ । ଆକବର୍ ସନ୍ଥ ସାଲିମ୍ ଚିସ୍ତିଙ୍କ ପ୍ରତି ଅତ୍ୟନ୍ତ କୃତଜ୍ଞ ବୋଧ କଲେ ।





ଆକବର ସେ ସନ୍ଥଙ୍କ ପାଖରେ ରହିବା ଉଦ୍ଦେଶ୍ୟରେ ଆଗ୍ରାରୁ ତାଙ୍କ ରାଜଧାନୀ ସେହି ସିକ୍ରି ପାହାଡ଼ ଉପରକୁ ଉଠାଇ ଆଣିଲେ । କ୍ଷିପ୍ର ଗତିରେ ଦୁର୍ଗର ନିର୍ମାଣ କାର୍ଯ୍ୟ ଚାଲିଲା ।

୧୫୭୩ ମସିହାରେ ଆକବର ସିକ୍ରି ଦୁର୍ଗରୁ ଗୁଜରାଟ ଅଭିଯାନ କଲେ । ଘମାଘୋଟ ଲଢ଼େଇ କରି, ଅନେକ ବିପଦ ସତ୍ତ୍ୱେ ସେ ଅବଶେଷରେ ଜୟ ଲାଭ କରି ପ୍ରତ୍ୟାବର୍ତ୍ତନ କଲେ । ସିକ୍ରି ନାମ ପୂର୍ବରୁ ସେ ଯୋଡ଼ିଦେଲେ ଫତେପୁର ଅର୍ଥାତ୍ ବିଜୟ ନଗରୀ ।





ତେଣିକି ଫତେପୁର ସିକ୍ରି ନାମରେ ବିଦିତ ସେ ଦୁର୍ଗରେ ଆକବର ପ୍ରାୟ ପନ୍ଦର ବର୍ଷ ରହିଲେ । ତାଙ୍କ ପାଖରେ ଥାନ୍ତି ତାଙ୍କ ପ୍ରିୟ ମନ୍ତ୍ରୀ ଓ ବନ୍ଧୁ ବୀରବଲ । ତାନ୍‌ସେନ୍ ବି ସେ ସ୍ଥାନକୁ ଖୁବ୍ ଭଲ ପାଉଥିଲେ ବୋଲି କଥା ଅଛି—ବିଶେଷତଃ ବର୍ଷା ଓ ବସନ୍ତ ଋତୁରେ ।

କିନ୍ତୁ ସେ ଆନନ୍ଦମୟ ଦିନ ଦୀର୍ଘସ୍ଥାୟୀ ହୋଇ ନଥିଲା ! ଦୁର୍ଗ ପ୍ରତିଷ୍ଠା ପରେ ପରେ ସେଠାରେ ସୈନ୍ୟ ସାମନ୍ତ, କର୍ମଗୃହୀମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । କିନ୍ତୁ ସେମାନଙ୍କ ତୃଷା ମେଣ୍ଟାଇବା ଭଳି ପାଣି ମିଳିବାର ସୁବିଧା ସେଠାରେ ନଥିଲା । ପାଣିର କୌଣସି ନୂତନ ଉତ୍ସ ଖୋଜି ବାହାର କରିବା ସମ୍ଭବ ହେଲା ନାହିଁ ।





ଏହିଠାରେ ଅଛି ଭାରତର ବୃହତ୍ତମ ତୋରଣ ଦ୍ୱାର ବୁଲନ୍ଦ ଦରୱାଜା । ମୂଳରୁ ଏହାର ଉଚ୍ଚତା ୧୭୬ ଫୁଟ ଏବଂ ଭୂସ୍ତର ଠାରୁ ୧୩୪ ଫୁଟ । ଶଙ୍ଖମଲମଲ ତଥା ବାଲିପଥର ଦ୍ୱାରା ନିର୍ମିତ ଏ ତୋରଣ ଦେଖିବାକୁ ଅତ୍ୟନ୍ତ ଚମତ୍କାର ।

ଆଉ ଗୋଟିଏ ଦର୍ଶନୀୟ ଇମାରତ୍ ହେଲା ହାୱାମହଲ୍ । ପାଞ୍ଚ ମହଲା ବିଶିଷ୍ଟ ଏ କୋଠାରେ ପବନର ଯାତାୟାତ ଅବାରିତ । ଦୁର୍ଗର ମହିଳା-ମାନଙ୍କ ପାଇଁ ଏ କୋଠା ଥିଲା ଅତ୍ୟନ୍ତ ପ୍ରିୟ । ଅବଶ୍ୟ ବେଶିଦିନ ଏଠାରେ କେହି ରହିପାରି ନଥିଲେ ।






ଆକବର୍ ଯେତେବେଳେ ଏଠାରୁ ରାଜଧାନୀ ଉଠାଇନେଲେ, ସେତେ-ବେଳେ ଏ ବିରାଟ ଦୁର୍ଗର ରକ୍ଷଣା-ବେକ୍ଷଣା ସହଜ ହେଲାନାହିଁ । ବହୁ ଦିନ ଧରି ଏହା ଜନଶୂନ୍ୟ ହୋଇ ପଡ଼ି ରହିବା ପରେ ଏବେ ପୁଣି ପରିବ୍ରାଜକ-ମାନଙ୍କ ପାଇଁ ଦର୍ଶନୀୟ ସ୍ଥାନ ଭାବରେ ଜନମୁଖର ହୋଇ ଉଠିଛି ।



# ଧଳା ଠେକୁଆ

ଜାପାନ ଦେଶର ଅଦୂରରେ ସମୁଦ୍ର ଭିତରେ ଗୋଟିଏ ଛୋଟିଆ ଦ୍ୱୀପଥାଏ । ସେଥିରେ ରହୁଥିଲେ କେବଳ ଠେକୁଆମାନେ । କିଏ ନାଲି ରଙ୍ଗର ତ କିଏ ନୀଳ ରଙ୍ଗର । କିଏ ବାଇଗଣି ରଙ୍ଗର ତ କିଏ ସବୁଜ । କିନ୍ତୁ ସେମାନଙ୍କ ଭିତରେ କେବଳ ଗୋଟିଏ ଠେକୁଆ ଥିଲା ଯିଏ ଦେଖିବାକୁ ପୂରା ଧଳା । ସେ ଯେ ଖାଲି ଦେଖିବାକୁ ଧଳା ତାହା ନୁହେଁ, ତା' ହୃଦୟ ମଧ୍ୟ ବଡ଼ ନିର୍ମଳ ।

ଅନେକ ସମୟରେ ଦ୍ୱୀପ କୂଳରେ ବସି ରହି ସେ ଠେକୁଆ ଜାପାନ ଭୂଖଣ୍ଡର ଗଛଲତା ଆଡ଼େ ଅନାଇଥାଏ । ସେଠାରେ କି କ'ଣ ଖାଲି ଠେକୁଆ ଅଛନ୍ତି ? ତା' ମନକୁ ଏହିପରି ନାନା ପ୍ରଶ୍ନ ଆସୁଥାଏ ।

ଅନେକ ସମୟରେ ଗୋଟିଏ କୁମ୍ଭୀର ଆସି ସେ ଦ୍ୱୀପର ନରମ ବାଲି ଉପରେ ବିଶ୍ରାମ କରୁଥାଏ । କ୍ରମେ ଧଳା ଠେକୁଆ ସେ କୁମ୍ଭୀର ସହ ବନ୍ଧୁତା କଲା । ତାହାଠୁଁ ଶୁଣିଲା ଜାପାନର କଥା । ସେଠାରେ ମଣିଷ ନାମକ ଜୀବ ରହନ୍ତି । ସେମାନେ ତଳ ଦୁଇ ଗୋଡ଼ ବ୍ୟବହାର କରି ମୁଣ୍ଡ ଉପରକୁ କରି ଚାଲନ୍ତି ଓ ଉପରେ ଦୁଇ ଗୋଡ଼କୁ ହାତ ବୋଲି କହି ତାହା ସାହାଯ୍ୟରେ ନାନା କାମଦାମ କରନ୍ତି ।

ସେ ଆହୁରି ମଧ୍ୟ ଶୁଣିଲା କି ସେ ମଣିଷମାନଙ୍କ ଉପରେ ଯିଏ ନେତା, ତାଙ୍କୁ ସମ୍ରାଟ କୁହାଯାଏ । ସେ ସମ୍ରାଟଙ୍କର ଜଣେ କନ୍ୟା ଅଛନ୍ତି । ସେ ଅତ୍ୟନ୍ତ ସୁନ୍ଦରୀ ଓ ଦୟାବତୀ । ତାଙ୍କୁ ବିଭା ହେବା ଉଦ୍ଦେଶ୍ୟରେ ଗୃହେଜଣ ସାମନ୍ତ ରାଜପୁତ୍ର ଆସୁଛନ୍ତି । ରାଜକନ୍ୟା ଯାହାକୁ ମନୋନୀତ କରିବେ, ତାଙ୍କୁ ବିଭା ହେବେ । ବିବାହ ବେଳେ ବିରାଟ ଉତ୍ସବ ହେବ । ସେପାଇଁ ରାଜଧାନୀରେ ବ୍ୟବସ୍ଥା



ଆରମ୍ଭ ହୋଇଗଲଣି । ଜାପାନ ଯାଇ ମଣିଷମାନଙ୍କୁ ଓ ସେ ବିବାହ ଉତ୍ସବ ଦେଖିବାକୁ ଧଳା ଠେକୁଆର ଭାରି ମନ ହେଲା । ସେ ସଙ୍କୋଚ କଟାଇ କହିଲା, "କୁମ୍ଭୀର ଭାଇ ! ତମେ ମୋତେ ତମ ପିଠିରେ ବସାଇ ସେ କୂଳକୁ ନେଇ ଯାଆନ୍ତ ନାହିଁ ?"

"ସେଥିରେ ଅସୁବିଧା କ'ଣ ? ତମେ ଭୟ ନକଲେ ହେଲା ।" କୁମ୍ଭୀର ଉତ୍ତର ଦେଲା ।

ଠେକୁଆ ଖୁସି ହୋଇ କୁମ୍ଭୀର ପିଠିରେ ବସିଲା । କୁମ୍ଭୀର ତାକୁ ନେଇ ଆର କୂଳରେ ଛାଡ଼ିଦେଲା ।

ଠେକୁଆ ଦେଖିଲା ସେଠାରେ ମାଟି ବଡ଼ କର୍କଶ । ତା' ନିଜ କୁନି ଦ୍ୱୀପର ବାଲି ଭଳି କୋମଳ ନୁହେଁ । ତଥାପି ନୂଆ ଦେଶ ଦେଖିବାର ଆନନ୍ଦରେ ସେ ଟିକିଏ ଅଗ୍ରସର ହୋଇଛି, ଗୋଟାଏ କୁକୁର ତାକୁ ଦେଖି ପକାଇଲା ଓ ତାକୁ କାମୁଡ଼ିବା ପାଇଁ ଗୋଡ଼ାଇଲା । ଠେକୁଆ ଦୌଡ଼ି ଚାଲି କୌଣସି ମତେ ଗୋଟାଏ କଣ୍ଟାବୁଦା ଭିତରେ ପଶିଗଲା, କିନ୍ତୁ ତହିଁ ପୂର୍ବରୁ କୁକୁର ତା'ର ଗୋଟାଏ ଗୋଡ଼କୁ କାମୁଡ଼ି ଦେଲା ।

"ହାୟ, ମୁଁ କାହିଁକି ମୋ ନିଜ ଦ୍ୱୀପ ଛାଡ଼ି ଏଠାକୁ ଆସିଲି ? ଏଠାରେ ତ ପ୍ରତି ମୁହୂର୍ତ୍ତରେ ବିପଦ !" ଠେକୁଆ ଏଇଆ ଭାବି ଅନେକ ସମୟ କଣ୍ଟା ବୁଦା ଭିତରେ ରହିବା ପରେ କିଛି ନୂଆ ପ୍ରକାର ଧ୍ୱନି ଶୁଣି ବାହାରି ଆସିଲା । ସେ କୁମ୍ଭୀର ପାଖରୁ ମଣିଷ ଓ ଘୋଡ଼ାମାନଙ୍କ ବର୍ଣ୍ଣନା ଶୁଣିଥିଲା । ତେଣୁ ଚାରିଜଣ ମଣିଷ ଯେ ଘୋଡ଼ା ଚଢ଼ି ଯାଉଛନ୍ତି, ଏହା ବୁଝିବାକୁ ତା'ର ବିଳମ୍ବ ହେଲା ନାହିଁ । ସେ ଅନାଇ ଦେଖିଲା, ସେମାନେ ତା' ଆଗକୁ ଆସି ରହିଗଲେ । ଜଣେ ପଚାରିଲା, "କେଉଁ ବାଟରେ ଗଲେ ସମ୍ରାଟଙ୍କ ଉଆସକୁ ବାଟ ପାଖ ହେବ ? ପୋଲ ଉପରଦେଇ ଯିବା ନା ତଳ ଦେଇ ଯିବା ?"

"ତଳ ଦେଇ ।" ବୋଲି ଆଉ ଜଣେ କହିଲା ।

"ଆମ ଭିତରୁ ଜଣେ ସମ୍ରାଟଙ୍କ ଜାମାତା ହେବ । ପୋଲତଳ ଦେଇ ଯିବା ଆମ



ପକ୍ଷରେ ଠିକ୍ ହେବ ନାହିଁ ।” ଆଉ ଜଣେ କହିଲା ।

ଠେକୁଆ ବୁଝିଲା ଯେ ଏଇ ଚାରିଜଣ ହେଲେ ରାଜକନ୍ୟାଙ୍କ ପାଣିପ୍ରାର୍ଥୀ । ଏମାନେ ନିଶ୍ଚୟ ମହତ୍ ପ୍ରକୃତିର ଯୁବକ ହୋଇଥିବେ ବୋଲି ଧରିନେଇ ଠେକୁଆ କହିଲା, “ବାବୁମାନେ ! ମୋତେ ସାଙ୍ଗରେ ନେଇଯିବ ? ମୁଁ ରାଜକନ୍ୟାଙ୍କୁ ଦେଖନ୍ତି !”

ସାମନ୍ତ ରାଜପୁତ୍ର ଚାରିଜଣ ଆଶ୍ଚର୍ଯ୍ୟ ହୋଇ ତା’ ଆଡ଼େ ଅନାଇଲେ । ଜଣେ କହିଲା, “ଏମିତି ଠେକୁଆ ଆମ ଦେଶରେ ନାହାନ୍ତି । ଏହାକୁ ଉଠାଅ । ଆଜି ରାଜାଙ୍କ ଅତିଥି-ଭବନରେ ଏହାର ମାଂସ ଚାଖିବା ।”

ଠେକୁଆର ଛାତି ଭୟରେ ଥରିଗଲା । ସେ ଛେଙ୍ଗା ହୋଇଥିବାରୁ ପଳାଇ ପାରିଲା ନାହିଁ । ସେତିକିବେଳେ ଆଉ ଜଣେ ଯୁବକ ସେ ଖଣ୍ଡିଆ ହୋଇଥିବାର ଦେଖି ପଚାରିଲା, “ତୁ ଖଣ୍ଡିଆ ହେଲୁ କିପରି ?”

“କୁକୁର କାମୁଡ଼ି ଦେଲା ।” ଠେକୁଆ ଉତ୍ତର ଦେଲା ।

“ଛାଡ଼ । ଏହାକୁ ଆମେ ଖାଇବା ନାହିଁ । କୁକୁର କାମୁଡ଼ିଥିବା ଜୀବ ବିଷାକ୍ତ ହୋଇ-ପାରେ ।” ଏହା କହି ସେ ଯୁବକମାନେ ଚାଲିଗଲେ । କିନ୍ତୁ ଯିବାବେଳେ କହିଗଲେ, “ହେଇଟି, ସେପଟେ ଲୁଣ ମରି ହେଉଛି । ଲୁଣ ଉପରେ ଗଡ଼ିଗଲେ ତୋ କଷ୍ଟ ଚାଲିଯିବ ।”

ଠେକୁଆ ଯାଇ ଲୁଣ ଉପରେ ଗଡ଼ିବା ମାତ୍ରେ ତା’ ଖଣ୍ଡିଆରେ ଲୁଣ ଲାଗି ତାକୁ ଭୀଷଣ କଷ୍ଟ ଦେଲା । ସେ ପୁଣି ପୂର୍ବ ସ୍ଥାନକୁ ପଳାଇ ଆସି ବସି କାନ୍ଦିଲା ଓ କହିଲା, “ବାପ୍‌ରେ, ମଣିଷମାନେ ଏପରି ଜୀବ ? ସେମାନେ ମୋତେ ଖାଇଥାନ୍ତେ । ଯଦି ନଖାଇ ପାରିଲେ, ବିନା କାରଣରେ ମୋତେ କଷ୍ଟ ଦେଲେ କାହିଁକି ?”

ସେ ବସି କାନ୍ଦୁଥାଏ, ହଠାତ୍ ଗୋଟିଏ ମଧୁର କଣ୍ଠସ୍ୱର ଶୁଣିଲା, “ଧଳା ଠେକୁଆ, କାନ୍ଦୁଛ କାହିଁକି ?”

ସେ ଅନାଇ ଦେଖିଲା, ଜଣେ ଯୁବକ ତା’ ବୋଝ ତଳେ ଥୋଇଦେଇ ତାକୁ ଅନାଇ

ବସିଛି । ଠେକୁଆର ମନେ ହେଲା, ଏ ଯୁବକ ଅନ୍ୟ ମଣିଷଙ୍କଠାରୁ ଅଲଗା । ସେ ତାକୁ ସବୁ କହିଲା । ଯୁବକଟି ଦୀର୍ଘଶ୍ୱାସ ଛାଡ଼ି କହିଲା, "ସେ ଚାରି ଯୁବକ ବାସ୍ତବିକ ନିଷ୍ଠୁର । କିନ୍ତୁ କ'ଣ କରାଯିବ! ମୋ ବାପାଙ୍କ ରାଜ୍ୟ ସେମାନେ ଛଡ଼ାଇ ନେଇଛନ୍ତି । ମୋତେ ଦାସ କରି ରଖିଛନ୍ତି । ସେହିମାନଙ୍କ ବୋଝ ଧରି ମୁଁ ସମ୍ରାଟଙ୍କ ଉଆସକୁ ଯାଉଛି ।"

ଏହାପରେ ଯୁବକ ଗୋଟିଏ ଔଷଧ ଗଛର ପତ୍ରରୁ ରସ ନିଗାଡ଼ି ଠେକୁଆର କ୍ଷତରେ ଦେଲା । ଠେକୁଆର ଯନ୍ତ୍ରଣା ଚାଲିଗଲା । "ଠେକୁଆ, ତମେ ଏଠାରେ ଏକୁଟିଆ ରହିଲେ ପୁଣି କୁକୁର କାମୁଡ଼ିବ ବା ଅନ୍ୟ ମଣିଷ ତମକୁ ଧରିନେବ । ମୋ ସହ ଚାଲ । ମୁଁ ତମକୁ ତମ ଦ୍ୱୀପକୁ ପଠାଇ ଦେବି ।"

ଠେକୁଆ ଆନନ୍ଦରେ ରାଜି ହେଲା । ଯୁବକ ତାକୁ ନେଇ ଉଆସ ପାଖରେ ପହଞ୍ଚିବା ମାତ୍ରେ କେତେଜଣ ପ୍ରହରୀ ଆସି ତାକୁ କହିଲେ, "ରାଜକନ୍ୟା ତାଙ୍କ ପ୍ରାସାଦର ବାତାୟନ ଦେଇ ତମେ ଗୋଟାଏ ଅଦ୍ଭୁତ ସୁନ୍ଦର ଧଳା ଠେକୁଆ ଧରିଥିବାର ଦେଖିଲେ । ସେ ତାକୁ ଥରେ ପାଖରୁ ଦେଖିବାକୁ ଚାହାନ୍ତି ।"

ଯୁବକ ଠେକୁଆକୁ ଧରି ରାଜକନ୍ୟାଙ୍କ ପାଖକୁ ଗଲା । ରାଜକନ୍ୟା ତାକୁ ହାତକୁ ନେଇ କହିଲେ, "ଆହା! କେଡ଼େ ସୁନ୍ଦର! ଯେଉଁ ଯୁବକର ହୃଦୟ ଏମିତି ସୁନ୍ଦର ହୋଇଥିବ, ସେହିଭଳି ଯୁବକର ସନ୍ଧାନ ମିଳନ୍ତା କି!"

ଠେକୁଆ କହିଲା, "ରାଜକନ୍ୟା! ସେହିଭଳି ସୁନ୍ଦର ହୃଦୟର ଯୁବକହିଁ ଏଠି ଠିଆ ହୋଇଛନ୍ତି । ତମେ ତାଙ୍କୁ ବାହା ହୁଅ ।" ଏହାପରେ ଠେକୁଆ ତା'ର ସବୁ ଅଭିଜ୍ଞତା କହିଗଲା । ରାଜକନ୍ୟା ଠେକୁଆକୁ ଆଣିଥିବା ଯୁବକକୁହିଁ ବାହା ହେଲେ । ଠେକୁଆ ଉଆସରେ ରହିଲା । ମଧ୍ୟେ ମଧ୍ୟେ ସେ ରାଜକନ୍ୟାଙ୍କ ସହ ନୌକାରେ ଯାଇ ନିଜ ଦ୍ୱୀପରୁ ବୁଲି ଆସେ ।







# ଉତ୍ତର ରାମାୟଣ

ଶ୍ରୀରାମଚନ୍ଦ୍ରଙ୍କର ଅଶ୍ୱମେଧ ଯଜ୍ଞରେ ଯୋଗ ଦେବାକୁ ମହର୍ଷି ବାଲ୍ମୀକି ମଧ୍ୟ ଆସିଥିଲେ । ସେ ଶିଷ୍ୟମାନଙ୍କ ସହିତ ଋଷି-ବାଟିକାରେହିଁ ରହିଥାନ୍ତି । ତାହା ତାଙ୍କ ପାଇଁ ସ୍ୱତନ୍ତ୍ର ଭାବରେ କରାଯାଇଥାଏ । ବାଲ୍ମୀକି, ଲବକୁଶ ଓ ଅନ୍ୟାନ୍ୟ ଶିଷ୍ୟମାନଙ୍କୁ ସର୍ବତ୍ର ରାମାୟଣ ଗାନ କରିବାକୁ କହିଲେ । ବିଶେଷ କରି ସେ କୁଶ ଲବଙ୍କୁ କହିଲେ, "ପିଲାମାନେ, ଯଦି ତୁମକୁ କେହି ପଚାରେ ତୁମେ କାହାର ପୁତ୍ର ବୋଲି ତୁମେ ଉତ୍ତର ଦେବ ଯେ ତମେ ବାଲ୍ମୀକିଙ୍କ ଶିଷ୍ୟ । କେହି ଧନ ଦେଲେ ତୁମେ ଗ୍ରହଣ କରିବ ନାହିଁ । ଯଦି ଶ୍ରୀରାମ ତୁମକୁ ଡାକିପଠାନ୍ତି ତେବେ ତାଙ୍କ ସମ୍ମୁଖରେ ବିନମ୍ରତାର ସହିତ ବ୍ୟବହାର କରିବ ।"

"ଯଥା ଆଜ୍ଞା, ମହର୍ଷି ।" ଏତକ କହି ଦୁଇଭାଇ ପର୍ଣ୍ଣକୁଟୀରରୁ ବାହାରି ଆସି ସୁନ୍ଦର ସ୍ୱରରେ ରାମାୟଣ ଗାନ କରି କରି ବୁଲିଲେ । ସେମାନଙ୍କର ମଧୁର ଗୀତ ଶୁଣି ସମସ୍ତେ ମୁଗ୍ଧ ହେଲେ । ରାମାୟଣ ହେଉଛି କରୁଣରସ ପ୍ରଧାନ । ଯିଏ ଶୁଣୁଥିଲା ତା'ର ଆଖି ଲୁହରେ ଉଚ୍ଛୁଳି ଉଠୁଥିଲା । ସେମାନଙ୍କ ପ୍ରଶଂସା ଶୁଣି ଶ୍ରୀରାମ ମଧ୍ୟ ତାଙ୍କୁ ନିମନ୍ତ୍ରଣ କଲେ । ସେମାନଙ୍କର ଗୀତ ପାଇଁ ଏକ ବିଶାଳ ସଭାର ଆୟୋଜନ ହେଲା ।

ପ୍ରଥମ ଦିନର ରାମାୟଣ ଗାୟନ ଏତେ ଚିତ୍ତାକର୍ଷକ ହୋଇଥିଲା ଯେ ମନେ ହେଉଥିଲା ଦେବତାମାନେ ବୋଧହୁଏ ଏହା ଶୁଣିବାକୁ ସ୍ୱର୍ଗରୁ ଓହ୍ଲାଇ ଆସିବେ । ଶ୍ରୀରାମ ଗୀତ

୧୩. କୁଶଲବଙ୍କ ରାଜ୍ୟାଭିଷେକ



ଶୁଣି ମୁଗ୍ଧ ହୋଇ ଲକ୍ଷ୍ମଣଙ୍କୁ କହିଲେ, "ଏହି ସୁନ୍ଦର ବାଳକ ଦୁଇଟିଙ୍କୁ ଅଠର ସହସ୍ର ସ୍ୱର୍ଣ୍ଣମୁଦ୍ରା ଉପହାର ଦେବାର ବ୍ୟବସ୍ଥା କର ।"

ଲକ୍ଷ୍ମଣ ସେମାନଙ୍କୁ ସ୍ୱର୍ଣ୍ଣମୁଦ୍ରା ଅର୍ପଣ କରିବାରୁ, ସେମାନେ କହିଲେ, "ଅରଣ୍ୟବାସୀଙ୍କ ପାଇଁ ଏ ସବୁର କୌଣସି ଆବଶ୍ୟକତା ନାହିଁ ।"

ଶ୍ରୀରାମ ପିଲାଙ୍କ ଉତ୍ତର ଶୁଣି ବିସ୍ମିତ ଓ ଆନନ୍ଦିତ ହେଲେ । ସେ କହିଲେ, "ତମେମାନେ ମହାନ୍ । କହିପାରିବ କି ତମେମାନେ ଗାନ କରୁଥିବା ବିଷୟ କେତେ ବଡ଼ ଓ ତାହାର ରଚୟିତା କିଏ ?"

"ରାଜନ୍, ମହାମୁନି ବାଲ୍ମୀକି ଏହି କାବ୍ୟର ରଚୟିତା । ଆପଣଙ୍କୁ ଯଦି ଏହି ଗୀତ ଭଲ ଲାଗୁଛି ତେବେ ଆମେ ପ୍ରତିଦିନ ଆସି ଆପଣଙ୍କୁ ଏହା ଶୁଣାଇବୁ ।" ଲବକୁଶ ଉତ୍ତର ଦେଲେ ।

ପ୍ରତିଦିନ ରାମାୟଣ ଶୁଣିବାକୁ ଶ୍ରୀରାମ ଇଚ୍ଛା ପ୍ରକାଶ କଲେ । କୁଶଲବ ପ୍ରତିଦିନ ରାମାୟଣର କିଛି ଅଂଶ ସଭାରେ ଗାନ କରି ଶୁଣାଉଥା'ନ୍ତି । ଯଜ୍ଞର ସବୁ ଆୟୋଜନ ଭୁଲି ସମସ୍ତେ ରାମାୟଣ ଶୁଣିବାକୁ ଖୁସିରେ ଆସୁଥା'ନ୍ତି । କ୍ରମେ ଏକଥା ମଧ୍ୟ ଜଣାପଡିଲା ଯେ ସେହି ବାଳକଦ୍ୱୟ ଅନ୍ୟ କେହି ନୁହନ୍ତି ସ୍ୱୟଂ ଶ୍ରୀରାମ ଓ ସୀତାଙ୍କ ପୁତ୍ର ଲବକୁଶ ।

ସବୁ ଜାଣିସାରିବା ପରେ ଶ୍ରୀରାମ ବାଲ୍ମୀକିଙ୍କ ପାଖକୁ ଲେଖି ପଠାଇଲେ, "ମହାମୁନି, ସୀତାଙ୍କୁ କୁହନ୍ତୁ ରାଜ୍ୟବାସୀଙ୍କ ସମ୍ମୁଖରେ ସେ ଥରେ ତାଙ୍କର ପବିତ୍ରତା ପ୍ରମାଣ କରନ୍ତୁ ।"

ବାଲ୍ମୀକି ମଧ୍ୟ ଉତ୍ତର ଦେଇ ପଠାଇଲେ କି ଶ୍ରୀରାମଙ୍କ ଇଚ୍ଛାନୁଯାୟୀ ଦେବୀ ସୀତା ଶପଥ ଗ୍ରହଣ କରିବେ । ଦୂତଠାରୁ ଏ ସମ୍ବାଦ ପାଇ ଶ୍ରୀରାମ ଏକ ବିରାଟ ସଭା ଡକାଇଲେ ଓ ଦେବୀ ସୀତାଙ୍କ ବିଷୟରେ ସେ ଯାହା ନିଶ୍ଚିତ କରିଛନ୍ତି ତାହା ଜଣାଇଲେ । ସମସ୍ତେ ତାଙ୍କର ସାଧୁବାଦ କଲେ ।

ପରଦିନ ଯଜ୍ଞବାଟିକା ନିକଟରେ ସମସ୍ତେ ଆସି ଏକତ୍ରିତ ହେଲେ । ସମ୍ପୂର୍ଣ୍ଣ ନୀରବତା ମଧ୍ୟରେ ବାଲ୍ମୀକିଙ୍କ ପଛରେ ଧୀରେ ଧୀରେ



ଚାଲି ଚାଲି ଆସିଲେ ଦେବୀ ସୀତା । ମସ୍ତକ ଅବନତ, କରୁଣାର ମୂର୍ତ୍ତି ସୀତାଙ୍କୁ ଅତି ଦୀନ ଭାବରେ ଭୂମି ଉପରେ ଦୃଷ୍ଟି ରଖି ଚାଲିଥିବାର ଦେଖି ସମସ୍ତଙ୍କ ହୃଦୟ ଦୁଃଖରେ ଶତଧା ବିଦୀର୍ଣ୍ଣ ହେଉଥିଲା । କି ବିଡ଼ମ୍ବନା ଯାହାର ପଦସ୍ପର୍ଶରେ ଗଙ୍ଗା ପବିତ୍ର ହେଉଥିଲା ଓ ଯାହାଙ୍କ ମଧ୍ୟ ନିଜକୁ ଗର୍ବିତ ମନେ କରୁଥିଲେ ସେହି ସୀତାଦେବୀଙ୍କର ଭାଗ୍ୟରେ ଏତେ ଦୁଃଖ ଏତେ ଯାତନା ଥିଲା ।

ମୁନି ବାଲ୍ମୀକି ଶ୍ରୀରାମଙ୍କୁ କହିଲେ, "ହେ ରାମ, ସତୀ ଶିରୋମଣି ସୀତାଙ୍କ ପବିତ୍ରତା ତ୍ରିଭୁବନ ବିଖ୍ୟାତ, ସାରା ଜଗତକୁ ପାବନ କରୁଥିବା ଅଗ୍ନି ଓ ଗଙ୍ଗା ସୀତାଙ୍କ ଯୋଗୁ ଅଧିକ ପବିତ୍ର ହୋଇଛନ୍ତି । ତମେ ମୂର୍ଖ ପ୍ରଜାଙ୍କର ସନ୍ଦେହକୁ ମୂଲ୍ୟ ଦେଇ ସୀତାଙ୍କୁ ତ୍ୟାଗ କରିଛ । ସେହି ଦିନଠାରୁ ସେ ମୋ ଆଶ୍ରମରେ ତପସ୍ୱିନୀ ଜୀବନ ବିତାଇଛନ୍ତି । ଆଜି ସୀତା ସମସ୍ତଙ୍କ ସମ୍ମୁଖରେ ନିଜର ପବିତ୍ରତା ସମ୍ପର୍କରେ ଶପଥ ନେବେ । ଯଦି ସୀତାଙ୍କ ଭିତରେ ଅଣୁମାତ୍ର ଅପବିତ୍ରତା ଥାଏ ତେବେ ମୋର ସମସ୍ତ ତପସ୍ୟା ବ୍ୟର୍ଥ ହୋଇଯିବ । ମୁଁ ଜାଣେ ତୁମ ମନରେ ସୀତା ପ୍ରତି କିଛି ସନ୍ଦେହ ନାହିଁ ତଥାପି ଲୋକ ଅପବାଦ ଭୟରେ ତୁମେ ଏପରି ଏକ ନିର୍ମମ କାର୍ଯ୍ୟ କରିଛ ।"

ଶ୍ରୀରାମ ମୁନି ବାଲ୍ମୀକିଙ୍କୁ ପ୍ରଣାମ କରି କହିଲେ, "ଆପଣ ଯାହା କହିଲେ ତାହା ନିରାଟ ସତ୍ୟ । ବନବାସ ସମୟରେହିଁ ଅଗ୍ନି-ଦେବ ସୀତାଙ୍କ ପବିତ୍ରତା ପ୍ରମାଣ କରିଥିଲେ । ତଥାପି ମଧ୍ୟ ଏହି ମହାସଭାରେ ଯଦି ସୀତା ନିଜର ପବିତ୍ରତା ପ୍ରମାଣ କରିବେ ତେବେ ମୁଁ ଆନନ୍ଦର ସହିତ ତାଙ୍କୁ ଗ୍ରହଣ କରିବି । ମହାମୁନି, ମୁଁ ଜଣେ ରାଜା । ପ୍ରଜାଗଣଙ୍କର ଅନୁରଞ୍ଜନ କରିବା ମୋର ସର୍ବାପେକ୍ଷା ବଡ଼ ଧର୍ମ । ସେହି କାରଣରୁ ମୁଁ ଦେବୀ ସୀତାଙ୍କର ଶପଥ ଗ୍ରହଣ ପାଇଁ ଏତେ ଉତ୍ସୁକ ।"

ଗେରୁଆ ବସ୍ତ୍ର ପିନ୍ଧିଥିବା ତପସ୍ୱିନୀ ସୀତା ହାତଯୋଡ଼ି ପୃଥିବୀ ଉପରେ ଦୃଷ୍ଟି ରଖି କହିଲେ, "ହେ ପୃଥିବୀମାତା, ଯଦି ମୁଁ ନିଜ ହୃଦୟରେ ରାମଙ୍କ ବ୍ୟତୀତ କେବେ ମଧ୍ୟ ଆଉ



ଯାହାକୁ ସ୍ମରଣ ନ କରିଥାଏ, ତେବେ ତୁ ବିଦୀର୍ଣ୍ଣ ହୋଇଯାଆ, ମୁଁ ସେହିଠାରେ ଚିର ଆଶ୍ରୟ ଗ୍ରହଣ କରେ। ହେ ପୃଥିବୀମାତା, ଯଦି ମୁଁ କାୟମନୋବାକ୍ୟରେ କେବଳ ଶ୍ରୀରାମଙ୍କୁ ଅନୁକ୍ଷଣ ଆରାଧନା କରିଥିବି ତେବେ ତୁ ବିଦୀର୍ଣ୍ଣ ହୋଇଯାଆ ମୁଁ ତୋ ଭିତରେ ଚିର ଆଶ୍ରୟ ଗ୍ରହଣ କରେ। ଯଦି ମୁଁ ରାମମୟ ହୋଇଥାଏ ତେବେ ମା' ମୋତେ ତୋ କୋଳରେ ଆଶ୍ରୟ ଦେ।"

ସୀତାଙ୍କର ଏହି ଶପଥ ମୁହଁରୁ ବାହାରିବା ମାତ୍ରେ ପୃଥିବୀ ଶତଧା ବିଦୀର୍ଣ୍ଣ ହେଲା ଓ ମହାନାଗ ନିଜର ମସ୍ତକ ଉପରେ ଏକ ଦିବ୍ୟ ସିଂହାସନ ଧରି ପୃଥିବୀ ଗର୍ଭରୁ ଉପରକୁ ଉଠିଲେ। ସେହି ଦିବ୍ୟ ସିଂହାସନ ଦେଖି ସମସ୍ତେ ଚମତ୍କୃତ ହେଲେ। ସେହି ସିଂହାସନ ଉପରେ ସ୍ୱୟଂ ପୃଥିବୀମାତା ଭୂଦେବୀ ମନୁଷ୍ୟ ରୂପରେ ବିରାଜମାନ କରୁଥିଲେ। ସେ ଅତ୍ୟନ୍ତ ବାତ୍ସଲ୍ୟଭାବ ସହ କରପ୍ରସାରଣ କରି ନିଜର କନ୍ୟା ସୀତାଙ୍କୁ ତୋଳି ନେଇ କୋଳରେ ବସାଇଲେ। ଧୀରେ ଧୀରେ ସିଂହାସନ ପୃଥିବୀ ଭିତରକୁ ଚାଲିଗଲା।

ଏସବୁ ଏତେ ଶୀଘ୍ର ଘଟିଲା ଯେ ସମସ୍ତେ ହତବୁଦ୍ଧି ଓ ନିର୍ବାକ ହୋଇ କେବଳ ଚାହିଁ ଦେଖୁଥା'ନ୍ତି। ସୀତା ଚାଲିଯିବା ପରେ ସମସ୍ତେ ହାହାକାର କରି ଉଠିଲେ। ନରବାନରମାନେ କ୍ରନ୍ଦନ କଲେ। ମୁନିଋଷିମାନେ ସତୀ ସୀତାଙ୍କର ସାଧୁବାଦ କଲେ।

ଶ୍ରୀରାମ ନିର୍ବାକ ଓ ସ୍ତମ୍ଭୀଭୂତ ହୋଇ ରହିଗଲେ। ସେ ତାଙ୍କର କରଦଣ୍ଡ ଉପରେ ଭରାଦେଇ ରୋଦନ କରିବାକୁ ଲାଗିଲେ। ଦୁଃଖରେ ଅଶ୍ରୁପାତ କରୁ କରୁ ସେ କହିଲେ, "ହେ ପୃଥିବୀମାତା, ମୁଁ ଏତେ ଦୁଃଖ କେବେ ଜୀବନରେ ପାଇନଥିଲି। ସୀତାକୁ ମୋତେ ଫେରାଇ ଦେ ମା' ନହେଲେ ମୋତେ ମଧ୍ୟ ତୋ ଭିତରକୁ ନେଇ ଯା।"

ଋଷିମୁନିମାନେ ଶ୍ରୀରାମଙ୍କୁ ସାନ୍ତ୍ୱନା ଦେଲେ। ବାଲ୍ମୀକି ଲବକୁଶଙ୍କୁ ନେଇ ପର୍ଣ୍ଣଶାଳାକୁ ଲେଉଟି ଗଲେ। ସମସ୍ତେ ସୀତାଙ୍କୁ ସ୍ମରଣ କରି କରି ସାରା ରାତି ବିତାଇଲେ।



ପରଦିନ ସଭାରେ ଲବକୁଶ ରାମାୟଣ ଗାନ କଲେ । ଯଜ୍ଞ ସମାପ୍ତ ହେଲା । ଶ୍ରୀରାମ ବିପୁଳ ଅର୍ଥ ଖର୍ଚ୍ଚ କରି ଅତିଥି ଅଭ୍ୟାଗତଙ୍କର ସତ୍କାର କଲେ । ତା'ପରେ ମଧ୍ୟ ସେ ଅନେକ ଯଜ୍ଞ କରାଇଥିଲେ । ସବୁଥିରେ ସୀତାଙ୍କ ସ୍ଥାନରେ ସୀତାଙ୍କର ଏକ ସ୍ୱର୍ଣ୍ଣ ପ୍ରତିମା ରଖୁଥିଲେ । ସେ ଜଣେ ନ୍ୟାୟଶୀଳ, ଧର୍ମରକ୍ଷାକାରୀ ଓ ପ୍ରଜାବତ୍ସଳ ରାଜା ଭାବରେ ସୁଖ୍ୟାତି ଲଭ କଲେ । ତାଙ୍କ ରାଜ୍ୟରେ ଅକାଳ ମୃତ୍ୟୁ, ଦୁଃଖ ଓ ଦୈବୀ ବିପଦ କେବେ ମଧ୍ୟ ଘଟୁ ନଥିଲା । ସେଥିପାଇଁ ଆଜିପର୍ଯ୍ୟନ୍ତ ମଧ୍ୟ କୌଣସି ଭଲ ଶାସନ ପଦ୍ଧତି ଦେଖିଲେ ଲୋକେ କୁହନ୍ତି ଏହା "ରାମରାଜ୍ୟ" ପରି ।

ସମୟ କ୍ରମେ କୌଶଲ୍ୟା, ସୁମିତ୍ରା ଓ କୈକେୟୀଙ୍କର ମୃତ୍ୟୁ ହେଲା । ଶ୍ରୀରାମ ସେମାନଙ୍କର ଯଥାବିଧି ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରି ବହୁବିଧ ଦାନ ଦେଉଥିଲେ ।

କିଛିଦିନ ପରେ କୈକେୟୀଙ୍କ ଭାଇ ଯୁଧାଜିତ୍ ଶ୍ରୀରାମଙ୍କ ନିକଟକୁ ଦଶହଜାର ଅଶ୍ୱ ଉପହାର ପଠାଇଲେ ଏବଂ ଏକ ବାର୍ତ୍ତାରେ ଲେଖିଥିଲେ, "ଶ୍ରୀରାମ, ସିନ୍ଧୁନଦୀର ଉଭୟ ପାର୍ଶ୍ୱରେ ସ୍ଥିତ ଗନ୍ଧର୍ବ ଦେଶ ଅତ୍ୟନ୍ତ ମନୋରମ । ସେଠାରେ ଶୈଲୁଷ ଜାତିର ତିନିକୋଟି ବଳବାନ୍ ପ୍ରଜା ବାସ କରନ୍ତି । ଆପଣ ସେମାନଙ୍କୁ ପରାଜିତ କରି ଦେଶଟିକୁ ନିଜ ଅଧୀନରେ ରଖନ୍ତୁ । ଆପଣଙ୍କର ମଙ୍ଗଳ ହେଉ ।"

ମାମୁଁ ଯୁଧାଜିତ୍‌ଙ୍କର ବାର୍ତ୍ତା ଶୁଣି ଶ୍ରୀରାମଚନ୍ଦ୍ର କହିଲେ, "ଭରତର ଦୁଇ ପୁଅ ତକ୍ଷ ଓ ପୁଷ୍କରଙ୍କୁ ନେଇ ସେହି ଗନ୍ଧର୍ବ ଦେଶକୁ ପରାଜିତ କରି, ଦେଶକୁ ଦୁଇଭାଗ କରି, ଦୁଇ ପୁତ୍ରଙ୍କୁ ସେଠାରେ ସିଂହାସନରେ ବସାଇ, ପୁଣି ଅଯୋଧ୍ୟା ଫେରି ଆସିବ ।"

ଶ୍ରୀରାମଙ୍କ ଆଜ୍ଞା ଅନୁସାରେ ଭରତ; ପୁତ୍ର ଦୁହିଁଙ୍କୁ ଓ ଏକ ବିରାଟ ସେନାବାହିନୀ ନେଇ ମାମୁଁ ଯୁଧାଜିତ୍‌ଙ୍କ ସହିତ ଦେଖା କଲେ ଓ ପରେ ଗନ୍ଧର୍ବ ଦେଶ ଜୟ କରିବା ପାଇଁ ଯୁଦ୍ଧ ଅଭିଯାନରେ ବାହାରିଲେ । ଯୁଦ୍ଧରେ ବୀର ଭରତ ଅଚିରେ ଜୟଲାଭ କଲେ । ତା'ପରେ ସେହି ଦେଶକୁ ଦୁଇ ଭାଗରେ ବିଭକ୍ତ କରି



ଦୁଇ ପୁଅଙ୍କୁ ଦେଲେ । ତକ୍ଷର ନାମାନୁସାରେ ସେହି ରାଜ୍ୟର ରାଜଧାନୀ ତକ୍ଷଶିଳା ନାମରେ ଅବହିତ ହେଲା । ପୁଣି ପୁଷ୍କଳର ନାମ ଅନୁସାରେ ସେହି ରାଜ୍ୟର ରାଜଧାନୀ ପୁଷ୍କଳାବତୀ ନାମରେ ନାମିତ ହେଲା । ଏବେ ଲକ୍ଷ୍ମଣଙ୍କ ପୁଅ ଅଙ୍ଗଦ ଓ ଚନ୍ଦ୍ରକେତୁଙ୍କୁ ରାଜ୍ୟ ଦେବା କଥା । ରାମ ଲକ୍ଷ୍ମଣଙ୍କୁହିଁ ସେ ଗୁରୁଦାୟିତ୍ୱ ଦେଲେ । ତା'ପରେ ଲକ୍ଷ୍ମଣଙ୍କ ପ୍ରସ୍ତାବ ଅନୁସାରେ କାରୁପଥ ନାମକ ଦେଶରେ ଅଙ୍ଗଦ ରାଜା ହେଲେ ଏବଂ ଚନ୍ଦ୍ରକାନ୍ତ ଦେଶରେ ଚନ୍ଦ୍ରକେତୁଙ୍କୁ ରାଜା କରାଗଲା ।

କିଛିଦିନ ବିତିଗଲା । ଦିନେ ଯମରାଜ ମୁନିବେଶ ଧାରଣ କରି ଶ୍ରୀରାମଙ୍କ ପାଖକୁ ଆସିଲେ । ସେ ଲକ୍ଷ୍ମଣଙ୍କୁ କହିଲେ, "ବତ୍ସ, ତମେ ଶ୍ରୀରାମଙ୍କୁ କୁହ ଯେ ମୁଁ ଏକ ମହାନ ମହର୍ଷିଙ୍କର ଦୂତ ରୂପେ ଏଠାକୁ ଆସିଛି । ମୋର କାର୍ଯ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ ।"

ଲକ୍ଷ୍ମଣଙ୍କଠାରୁ ଏ ଖବର ଶୁଣି ଶ୍ରୀରାମ ମୁନିଙ୍କୁ ସାଦର ଅଭ୍ୟର୍ଥନା କରି ଭିତରକୁ ନେଇଗଲେ । ସେ କହିଲେ, "ଶ୍ରୀରାମ ମୋର ଆପଣଙ୍କୁ କିଛି ଗୋପନୀୟ କଥା କହିବାର ଅଛି । ଆମର ବାର୍ତ୍ତାଳାପ ସମୟରେ କେହି ଯଦି ଏଠାକୁ ଆସେ ତେବେ ତାକୁ ଆପଣ ମୃତ୍ୟୁଦଣ୍ଡ ଦେବେ । ଏହି ସର୍ତ୍ତରେହିଁ ମୁଁ ଆପଣଙ୍କ ସହିତ ବାର୍ତ୍ତାଳାପ କରିବି ।"

ଶ୍ରୀରାମ ଯମରାଜଙ୍କ ସର୍ତ୍ତକୁ ସ୍ୱୀକାର କଲେ । ସେ ଲକ୍ଷ୍ମଣଙ୍କୁ ଡାକି କହିଲେ, "ଲକ୍ଷ୍ମଣ, ରାଜଭବନର ଦ୍ୱାର ଦେଶରେ ପ୍ରତିହାରୀ ପାଖରେ ତମେ ନିଜେ ରହି ଦ୍ୱାର ଜଗିବ । ଆମର ସର୍ତ୍ତ ତ ଶୁଣିଲ, ସାବଧାନ ଥିବ ।"

ଲକ୍ଷ୍ମଣ ଯିବା ପରେ ଯମରାଜ କହିଲେ, "ଶ୍ରୀରାମ, ମୁଁ ଯମରାଜ ବ୍ରହ୍ମାଙ୍କ ଆଦେଶରେହିଁ ଛଦ୍ମବେଶରେ ଆସିଛି । ବ୍ରହ୍ମା ନିବେଦନ କରି କହିଛନ୍ତି କି ଆପଣ ରାବଣକୁ ସଂହାର କରିବାକୁହିଁ ପୃଥିବୀ ଉପରେ ଅବତାର ନେଇଥିଲେ । ଆପଣ ସ୍ୱୟଂ ଭଗବାନ ବିଷ୍ଣୁ । ଏବେ ବୈକୁଣ୍ଠକୁ ଫେରି ଚାଲନ୍ତୁ । ଅବତାର ନେବାର ଆବଶ୍ୟକତା ପଡ଼ିଲେ ଆପଣ ପୁଣି ଆସିବେ ।"



ଶ୍ରୀରାମ କହିଲେ, "ଧର୍ମରାଜ, ଆପଣଙ୍କ ଆଗମନରେ ମୁଁ ବହୁତ ଖୁସି । ମୁଁ ମଧ୍ୟ ସ୍ୱଧାମକୁ ଫେରିଯିବା ପାଇଁ ତତ୍ପର ଓ ଆଗ୍ରହୀ ।"

ଯେତେବେଳେ ଏହି ବାର୍ତ୍ତାଳାପ ଚାଲିଥିଲା ସେତେବେଳେ ଦ୍ୱାରଦେଶରେ ଦେଖାଦେଲେ ମହାମୁନି ଦୁର୍ବାସା । ସେ ଲକ୍ଷ୍ମଣଙ୍କୁ କହିଲେ, "ଲକ୍ଷ୍ମଣ, ମୁଁ ଏହି ମୁହୂର୍ତ୍ତରେ ଶ୍ରୀରାମଙ୍କ ସହିତ ଦେଖା କରିବାକୁ ଚାହେଁ ।"

ଲକ୍ଷ୍ମଣ ବିନୀତ ସ୍ୱରରେ କହିଲେ, "ମହାମୁନି, ଶ୍ରୀରାମ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟ ନେଇ ଜଣେ ଋଷିଙ୍କ ସହ ବାର୍ତ୍ତାଳାପ କରୁଛନ୍ତି । ଆପଣ କିଛି ସମୟ ପ୍ରତୀକ୍ଷା କରନ୍ତୁ କିମ୍ବା ମୋତେ କୁହନ୍ତୁ ଆପଣଙ୍କ ଶୁଭ ଆଗମନର କାରଣ କ'ଣ ?" ଦୁର୍ବାସା ଏଥିରେ ଅପମାନ ବୋଧ କରି କହିଲେ, "ଲକ୍ଷ୍ମଣ, ଯଦି ତମେ ମୋତେ ତୁରନ୍ତ ରାମଙ୍କ ପାଖକୁ ନେଇ ନ ଯିବ ତେବେ ମୁଁ ଅଭିଶାପ ଦେଇ ତୁମର ବଂଶ ନଷ୍ଟ କରିବ ।"

ଲକ୍ଷ୍ମଣ ଚିନ୍ତା କରି ଦେଖିଲେ ଯେ ଯଦି ଭାଇଙ୍କ ହାତରେ ତାଙ୍କର ମୃତ୍ୟୁଦଣ୍ଡ ହୁଏ ତ ତାହା ଶ୍ରେୟ । କିନ୍ତୁ କୁଳନାଶ ହେବା କଥା ନୁହେଁ । ଲକ୍ଷ୍ମଣ ଶ୍ରୀରାମଙ୍କ ଭବନ ଭିତରକୁ ଯାଇ ଦୁର୍ବାସାଙ୍କ ଆଗମନ ବାର୍ତ୍ତା ଶୁଣାଇଲେ ।

ଶ୍ରୀରାମ ଉଠି ଆସିଲେ ଓ ଦୁର୍ବାସାଙ୍କୁ ପ୍ରଣାମ କରି କହିଲେ, "ମୁନିବର, ଆଜ୍ଞା କରନ୍ତୁ ମୁଁ କି ଭାବରେ ଆପଣଙ୍କ ସେବା କରିବ ।"

"ମୋତେ ଭଲ ଭୋଜନ କରାଅ ।" ଦୁର୍ବାସା କହିଲେ ।

ନାନା ପ୍ରକାର ସୁଖାଦ୍ୟର ବ୍ୟବସ୍ଥା ହେଲା । ଦୁର୍ବାସା ଖାଇପିଇ ସନ୍ତୁଷ୍ଟ ହୋଇ ଚାଲିଯିବା ପରେ ରାମଙ୍କର ପୂର୍ବ ସର୍ତ୍ତ କଥା ମନେପଡ଼ି ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ଉଠିଲେ । ଲକ୍ଷ୍ମଣ କହିଲେ, "ପ୍ରଭୁ, ଆପଣ ମୋ ପାଇଁ ଚିନ୍ତା କରନ୍ତୁ ନାହିଁ । ଆପଣ ମୋତେ ମୃତ୍ୟୁଦଣ୍ଡ ଦେଇ ନିଜର ସତ୍ୟ ରକ୍ଷା କରନ୍ତୁ ।"

ଶ୍ରୀରାମ ତାଙ୍କର ମନ୍ତ୍ରୀମଣ୍ଡଳ, ଗୁରୁ, ପୁରୋହିତ ଇତ୍ୟାଦିଙ୍କୁ ଡାକି ଏହି ଧର୍ମସଙ୍କଟ ବିଷୟରେ କହିଲେ । ସମସ୍ତେ ଏକମତ ହୋଇ କହିଲେ, "ଶ୍ରୀରାମ, ତମେ ଲକ୍ଷ୍ମଣଙ୍କୁ

ତ୍ୟାଗ କର । ଏହା ପ୍ରାଣଦଣ୍ଡର ସମାନ ହେବ । ସତ୍ୟ ଭଙ୍ଗ କର ନାହିଁ ।"

ଲକ୍ଷ୍ମଣ ଶ୍ରୀରାମଙ୍କୁ ପ୍ରଣାମ କରି ନୀରବରେ ସରଜୁ ତଟକୁ ଯାଇ ଧ୍ୟାନସ୍ଥ ହେଲେ । ଇନ୍ଦ୍ର ବିମାନରେ ତାଙ୍କୁ ସଶରୀରେ ସ୍ୱର୍ଗକୁ ନେଇଗଲେ । ବିଷ୍ଣୁଙ୍କର ଏକ ଅଂଶ ପୁଣି ବିଷ୍ଣୁଙ୍କ ସହିତ ଲୀନ ହୋଇଗଲା ।

ଲକ୍ଷ୍ମଣ ଯିବା ପରେ ଭଗ୍ନହୃଦୟ ଶ୍ରୀରାମ ଏକ ବିରାଟ ସଭା ଡାକି କହିଲେ, "ଏବେ ମୋର ଯିବାର ପାଳି, ଆପଣମାନେ ଭରତଙ୍କୁ ଡାକି ସିଂହାସନରେ ବସାନ୍ତୁ ।"

ଏକଥା ଶୁଣି ଭରତ ବ୍ୟାକୁଳ ହୋଇ କାନ୍ଦିବାକୁ ଲାଗିଲେ । ସେ କହିଲେ, "ପ୍ରଭୁ, ଆପଣଙ୍କ ବ୍ୟତୀତ ସଂସାର ମୋ ପାଇଁ ଶୂନ୍ୟ । ଆପଣ କୁଶଲବଙ୍କର ରାଜ୍ୟାଭିଷେକ କରନ୍ତୁ । ମୁଁ ଶତ୍ରୁଘ୍ନଙ୍କୁ କହି ପଠାଉଛି କି ଆମେ ସ୍ୱର୍ଗଲାଭ ପାଇଁ ଏବେ ପ୍ରସ୍ଥାନ କରୁଛୁ ।"

ଶତ୍ରୁଘ୍ନ ଖବର ପାଇ ନିଜ ରାଜ୍ୟକୁ ଦୁଇଭାଗ କରି ନିଜର ଦୁଇ ପୁଅ ସୁବାହୁ ଓ ଶତ୍ରୁଘାତୀଙ୍କୁ ଦେଲେ ଓ ଅଯୋଧ୍ୟା ଫେରି ଆସିଲେ । ଏ ସମ୍ବାଦ ଶୁଣି ବିଭୀଷଣ ସପରିବାରେ ଅଯୋଧ୍ୟାରେ ପହଞ୍ଚିଲେ । ସୁଗ୍ରୀବ ଅଙ୍ଗଦର ରାଜ୍ୟାଭିଷେକ କରି ଆସି ଅଯୋଧ୍ୟାରେ ପହଞ୍ଚିଲେ ।

ମହାପ୍ରୟାଣ ସମୟରେ ଶ୍ରୀରାମ ନୀରବରେ ଚାଲିଥା'ନ୍ତି । ତାଙ୍କ ସହିତ ଭକ୍ତିର ସହିତ ଚାଲିଥା'ନ୍ତି ଅନ୍ତଃପୁରର ନାରୀମାନେ, ଭରତ, ଶତ୍ରୁଘ୍ନ, ମନ୍ତ୍ରୀ, ରାକ୍ଷସଗଣ, ବାନରଗଣ ଓ ଅନ୍ୟମାନେ ।

କିଛି ସମୟ ପରେ ସେ ସରଜୁ ତଟରେ ପହଞ୍ଚିଲେ । ସେହି ସମୟରେ ବ୍ରହ୍ମାଙ୍କର ଆବାହନ ଶୁଣାଗଲା । ଶ୍ରୀରାମ ଭରତ ଓ ଶତ୍ରୁଘ୍ନଙ୍କ ସହ ବୈଷ୍ଣବ ରୂପ ପ୍ରାପ୍ତ ହୋଇ ମହାନ୍‌ଧାମ ପ୍ରାପ୍ତ କଲେ । ଅବଶେଷରେ ହୋଇଥିବା ଅନ୍ୟମାନେ ମଧ୍ୟ ନିଜ ନିଜର ଧାମ ପ୍ରାପ୍ତ କଲେ । (ସମ୍ପୂର୍ଣ୍ଣ)





# ନବକୁବେର

କାଞ୍ଚିପୁରରେ ଚନ୍ଦ୍ରନାଥ ନାମକ ଜଣେ ବୈଶ୍ୟ ଥିଲେ । ତାଙ୍କର ଅମାପ ସମ୍ପତ୍ତି ଥିବା ହେତୁ ଲୋକେ ତାଙ୍କୁ ନବକୁବେର ବୋଲି ଡାକୁଥା'ନ୍ତି । ତାଙ୍କର ଅନେକ ପୁଅଝିଅ ଥିଲେ । ପୁଅମାନେ ଓ ଜ୍ୱାଇଁମାନେ ସାହାଯ୍ୟ କରୁଥିବାରୁ ଧନ ଅଧିକରୁ ଅଧିକ ବଢ଼ିଲା । ଧନଜନ ଗୋପଲକ୍ଷ୍ମୀ ପରିପୂର୍ଣ୍ଣ, ବନ୍ଧୁବାନ୍ଧବ ପରିବେଷ୍ଟିତ, ନବକୁବେର ଅତି ଆନନ୍ଦରେ ଦିନ ଅତିବାହିତ କରୁଥା'ନ୍ତି ।

ଏତେ ଐଶ୍ୱର୍ଯ୍ୟର ଅଧିକାରୀ ହେଲେ ମଧ୍ୟ ସେ ନିଜ ପରିବାର ବ୍ୟତୀତ ବାହାରେ କାଣି-କଉଡ଼ିଟିଏ ବି କାହାକୁ ଦିଅନ୍ତି ନାହିଁ । ଦୁଃଖୀ, ଭିକାରୀ ବା ଦାନଧର୍ମ, ଏସବୁ ସେ କିଛି ଜାଣନ୍ତି ନାହିଁ । ତୀର୍ଥଯାତ୍ରା ବା ଭଗବାନଙ୍କ ନାମରେ ପଇସାଟିଏ ଖର୍ଚ୍ଚ କରିବାର କେହି ତାଙ୍କୁ ଦେଖିନାହିଁ ।

ଦିନେ ଜ୍ଞାନାନନ୍ଦ ନାମକ ଏକ ସାଧୁ ଆସି ତାଙ୍କ ଗୃହଦ୍ୱାରରେ କିଛି ଭିକ୍ଷା ଚାହିଁଲେ । ସେଥିରେ ନବକୁବେର ରାଗିଯାଇ କହିଲେ, "ଆରେ କୋଢ଼ିଆ, ନିକମା, ଚୋର, କେଉଁଠିକାର, କାମ କରିବାକୁ ପଡ଼ିବ ବୋଲି ବାବାଜୀ ବେଶ ସାଜି ବୁଲୁଛୁ ?" ନବକୁବେର କହିଲେ ।

ତା'ପରେ ସାଧୁ ଓ ନବକୁବେରଙ୍କ ମଧ୍ୟରେ ବହୁ ସମୟ ପର୍ଯ୍ୟନ୍ତ ଯୁକ୍ତି ତର୍କ ଚାଲିଲା । ପରେ ନବକୁବେର ବିରକ୍ତ ହୋଇ ଚାକରମାନଙ୍କୁ ଡକାଇ ସାଧୁଙ୍କୁ ବାହାର କରିଦେଲେ । ସାଧୁ କିନ୍ତୁ ତାଙ୍କ ଘର ସାମ୍ନା ଗଛମୂଳେ ଆସନ ପାରି ନିରାହାରରେ ବସି ରହିଲେ ।

ନବକୁବେର ଥରେ ସାଧୁଙ୍କୁ କହିଲେ, "ତମେ ବରଂ ନଖାଇ ମରିଯିବ ମୁଁ କିନ୍ତୁ ତୁମକୁ ଖାଇବାକୁ ଦେଉନାହିଁ ।"

ପଚିଶ ବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ସାଧୁ ନବକୁବେରଙ୍କ ଘର ଆଗରେ ତିନିଦିନ ଓ ତିନିରାତି ସେମିତି ଅନାହାରରେ ବସି ରହିଥା'ନ୍ତି । ଏଣେ ନବକୁବେରଙ୍କ ଶୁଭେଚ୍ଛୁ-ମାନେ କହିଲେ ଯେ ଯଦି ସାଧୁ ରାଗିଯାଇ ଅଭିଶାପ ଦିଅନ୍ତି ତେବେ ଫଳ ଖରାପ ହେବ । ତେଣୁ ସାଧୁଙ୍କୁ ଥରେ ଖାଇବାକୁ ଦେଇଦେଲେ ତ ଅଡୁଆ ଛିଣ୍ଡିଯାନ୍ତା। ନବକୁବେର କିନ୍ତୁ ନିଜ କଥାରେ ଅଟଳ ରହିଲେ । ସେପାଖର ଦ୍ୱାର ସେ ବନ୍ଦ କରି ଦେଇ ଅନ୍ୟ ଦ୍ୱାର ଦେଇ ଯିବା ଆସିବା କଲେ । ଭାବିଲେ ଯେ ତାଙ୍କର ଜୟଲାଭ ହୋଇଛି ।

କିଛିଦିନ ପରେ ନବକୁବେର ବନ୍ଦ ରଖିଥିବା ଦ୍ୱାର ଖୋଲିଲେ, ଦେଖିଲେ ସାଧୁ ସେଠି ଠିଆ ହୋଇଛନ୍ତି । ଧେତ୍, ଏ ସାଧୁ କାହିଁକି ଶନିଗ୍ରହ ପରି ମୋ ପଛରେ ଲଗିଛନ୍ତି । ଯାଇ ପଚାର ତାଙ୍କର ଦରକାର କ'ଣ ।" ନବକୁବେର ଜଣେ ଭୃତ୍ୟଙ୍କୁ କହିଲେ ।

ସାଧୁ ଭୃତ୍ୟଙ୍କୁ କହିଲେ, "ତୁମ ସେଠଙ୍କୁ କିଛି ମୁଁ ଏଥର ମାଗିବାକୁ ଆସିନାହିଁ, ବରଂ କଥାବାର୍ତ୍ତା କରିବାକୁ ଆସିଛି ।"

ନବକୁବେର ସାଧୁଙ୍କ ପାଖକୁ କହି ପଠାଇଲେ କି ଛଅମାସ ପର୍ଯ୍ୟନ୍ତ ତାଙ୍କର କଥା କହିବାକୁ ଫୁରସତ୍ ନାହିଁ । ସାଧୁ ଫେରିଗଲେ । ଠିକ୍ ଛଅମାସ ଯେଉଁଦିନ ପୂରିଲା ସେହିଦିନ ସାଧୁ ଆସି ପହଞ୍ଚିଲେ । ଏଥର ମଧ୍ୟ ସେଠଜୀ ଆଉ କିଛି କାମର ବାହାନା କରି ସମୟ ଘୁଞ୍ଚାଇଲେ ।

ଏହିପରି ବର୍ଷେ କଟିଗଲା । ଅବଶେଷରେ ସାଧୁଠାରୁ ମୁକ୍ତି ପାଇବାକୁ ସେ ଥରେ ସମୟ ଦେଇ ତା' କଥା ଶୁଣିବାକୁ ରାଜି ହେଲେ ।

ପୂର୍ବନିର୍ଦ୍ଧାରିତ ଦିନ ସାଧୁ ଆସି ପହଞ୍ଚିଲେ । ଶେଠଜୀଙ୍କୁ ସେ କହିଲେ, "ମୁଁ ବର୍ଷେ ହେଲା ତୁମର ଗତିବିଧି ଉପରେ ନଜର ରଖୁଛି । ପୂର୍ବଜନ୍ମରେ ତୁମର କିଛି ତପସ୍ୟା ଫଳ ଥିବା ଯୋଗୁ ଏ ଜନ୍ମରେ ଏତେ ଐଶ୍ୱର୍ଯ୍ୟର ଅଧିକାରୀ ହୋଇଛ । ଏବେ ସେହି ଐଶ୍ୱର୍ଯ୍ୟ ଯୋଗୁ ଯଦି ଅନ୍ଧ ହେବ ତେବେ ତୁମକୁ ଏହି ପାପପୂର୍ଣ୍ଣ ସଂସାରରୁ କିଏ ଉଦ୍ଧାର କରିବ ? ସେଥିପାଇଁ ତୁମେ ନିଜେ ସତ୍ତ୍ୱକୁ ଜାଣିବାକୁ ଚେଷ୍ଟା କର ।

"ଓଃ, ତୁମର ଉଦ୍ଦେଶ୍ୟ ହେଉଛି ମୋତେ ମୋର ବନ୍ଧୁବାନ୍ଧବଙ୍କଠାରୁ ଦୂରରେ ରଖିବାକୁ ?" ନଳକୁବେର କହିଲେ ।

"ପ୍ରକୃତରେ ଦେଖିଲେ ଏ ସଂସାରରେ କିଏ କାହାର ? ଭଗବାନ୍‌ଙ୍କ ବ୍ୟତୀତ ନିଜର କେହି ନୁହେଁ । ତମେ ସେମାନଙ୍କଠାରୁ ଟିକିଏ ଦୂରେଇ ରହିଲେ ଜାଣିପାରିବ ସେମାନଙ୍କ ମନୋବୃତ୍ତି ।" ସାଧୁ କହିଲେ ।

"ଆଚ୍ଛା, ଏସବୁ ତମେ କିପରି ଜାଣିଲ ?" ସେଠଜୀ ପଚାରିଲେ ।

"ମୁଁ ଓ ତୁମେ ଗତ ଜନ୍ମରେ ଏକାଠି ତପସ୍ୟା କରୁଥିଲେ । ମୁଁ ଆତ୍ମଉପଲବ୍ଧି କରିଥିବାରୁ ସତ୍ୟ କ'ଣ ଜାଣେ । ଐଶ୍ୱର୍ଯ୍ୟ ପ୍ରତି ଆକୃଷ୍ଟ ହେବାରୁ ତମେ ସତ୍‌ପଥ ଚ୍ୟୁତ ଏହି ପଥରେ ଅନ୍ଧଭଳି ଚାଲୁଛ । ପୂର୍ବକଥା ତୁମର ବିସ୍ମରଣ ହୋଇଛି । ତୁମର ଏହି ଅଧୋଗତି ଦେଖି ମୁଁ ବାଧ୍ୟ ହୋଇ ଥରେ ତୁମକୁ ସେ ବିପଦରେ ଠେଲାଇ ଦେବାକୁ ଆସିଲି ।"

"ଯାହା ସବୁ କହିଲ ମୁଁ ବୁଝୁଛି । କିନ୍ତୁ ମୋର ପରିବାରବର୍ଗ ମୋତେ କେତେ ସ୍ନେହ ଓ ପ୍ରେମଭାବ ଦେଖାନ୍ତି ସେସବୁ ମିଥ୍ୟା ବୋଲି ତୁମ କଥାରେ ପଡ଼ି କିପରି ବିଶ୍ୱାସ କରିବି ?" ସେଠଜୀ କହିଲେ ।

"ଥରେ ପରୀକ୍ଷା କରି ଦେଖ ।" ଏକଥା କହି ସାଧୁ ତାଙ୍କୁ କିଛି ଉପାୟ ବତାଇ ଦେଲେ । ପରଦିନହିଁ ସେଠଜୀ ମୃତ ପ୍ରାୟ ପଡ଼ି ରହିଲେ । ଖିଆପିଆ ବନ୍ଦ । ବୈଦ୍ୟମାନେ



କୌଣସି ରୋଗ ନିର୍ଣ୍ଣୟ କରିପାରିଲେ ନାହିଁ । ନିଜ ପରିବାର ଛଡ଼ା ପ୍ରାୟ ଦୁଇଶହଜଣ ବନ୍ଧୁବାନ୍ଧବ ନବକୁବେରଙ୍କ ଉପରେ ନିର୍ଭର କରି ଚଳୁଥା'ନ୍ତି । ସେଠଜୀ ସ୍ତ୍ରୀ ରମାଙ୍କୁ ଡ଼ାକି କହିଲେ, "ମୋର ମୃତ୍ୟୁ ନିକଟ ହେବାର ମୁଁ ଜାଣିପାରୁଛି । ଏତେ ଧନ କମାଇଲି । କିନ୍ତୁ ଦୟାଧର୍ମ କାର୍ଯ୍ୟରେ କିଛି ଖର୍ଚ୍ଚ ନ କରିବାରୁ ମୋର ଅବଶୋଷ ରହିଗଲା । ଆଉ ଯଦି ବର୍ଷେ ବଞ୍ଚନ୍ତି ତେବେ କେତେ ଭଲ ନ ହୁଅନ୍ତା ।" ସମସ୍ତେ ବ୍ୟସ୍ତ ହେଲେ ।

ଠିକ୍ ଏହି ସମୟରେ ସାଧୁ ଆସି କହିଲେ, "ମୋ ନିକଟରେ ଗୋଟାଏ ଉପାୟ ଅଛି । ମୁଁ ଜଣକ ଆୟୁ ଆଉ ଜଣକୁ ଦେଇ ଦେଇ ପାରେ । ଏଠାରେ କିଏ ଶେଠଜୀଙ୍କ ପାଇଁ କିଛି ଆୟୁ ଦେବାକୁ ପ୍ରସ୍ତୁତ କୁହ ।"

ସମସ୍ତେ ନୀରବ ରହିଲେ । ତା'ପରେ ସାଧୁ କହିଲେ, "କ'ଣ କେହି ଜଣେ ମଧ୍ୟ ଦେଇପାରିବ ନାହିଁ ? ସାରା ଜୀବନ ସେ ଟଙ୍କା ରୋଜଗାର କରି ତୁମମାନଙ୍କୁ ପୋଷିଲେ । ତମେ କିଛିମାତ୍ର ଆୟୁ ତା'ର ପ୍ରତିବଦଳରେ ଦେଇପାରିବ ନାହିଁ ? କି ଆଶ୍ଚର୍ଯ୍ୟ ?"

ତଥାପି ସମସ୍ତେ ନୀରବ । ଇତିମଧ୍ୟରେ ନବକୁବେର ବିଛଣା ଛାଡ଼ି ଉଠି ବସିଲେ ଓ ସାଧୁଙ୍କୁ କହିଲେ, "ସାଧୁଜୀ ଆଜି ଆପଣ ମୋର ଦିବ୍ୟଚକ୍ଷୁ ଖୋଲି ଦେଇଛନ୍ତି । ମୋତେ ଘୋର ଅଜ୍ଞାନରୁ ଉଦ୍ଧାର କରି ଜ୍ଞାନାଲୋକ ପ୍ରଦାନ କରିଛନ୍ତି । ମୁଁ ଆପଣଙ୍କ ପାଖରେ ଆଜୀବନ କୃତଜ୍ଞ ।"

ନବକୁବେରଙ୍କୁ ସୁସ୍ଥ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ସମୟ କ୍ରମେ ତାଙ୍କ ଉପରେ ନିର୍ଭର କରି ଚଳୁଥିବା ଲୋକଙ୍କର ସଂଖ୍ୟା କମ୍ ହୋଇଗଲା ଏବଂ ନବକୁବେର ସାଧୁସନ୍ଥ, ଦୁଃଖିରଙ୍କିଙ୍କ ସେବାରେ ଓ ଭଗବାନ୍‌ଙ୍କ ସେବାରେ ନାନା ଧର୍ମାନୁଷ୍ଠାନ କରି ଧନ ସବୁ ଖର୍ଚ୍ଚ କରିବାକୁ ଲାଗିଲେ ।





# ଜାମାତା ନିର୍ବାଚନ

[୮]

ରାଜଦ୍ୱୀପ ଗ୍ରାମବାସୀମାନଙ୍କୁ ସାଥିରେ ଧରି ମୁଖିଆଙ୍କ ଘର ପାଖକୁ ଗଲା । ସେମାନଙ୍କୁ ଦେଖି ଜୟ ବିଜୟ ଟିକିଏ ଡରିଗଲେ ।

"ଆମେ ମୁଖିଆଙ୍କୁ ଦେଖା କରିବାକୁ ଚାହୁଁ ।" ଗ୍ରାମବାସୀମାନେ ସମସ୍ୱରରେ କହିଲେ ।

"କାହିଁକି ? କ'ଣ ଦରକାର ?" ଜୟ ବିଜୟ କହିଲେ ।

"ରାଜଦ୍ୱୀପ କହୁଛନ୍ତି କି ସେହିଁ ମହାବିଷ୍ଣୁଙ୍କ ଅବତାର । ଏକଥା ସତ୍ୟ ନା ମିଥ୍ୟା ସେକଥା ଆମେ ମୁଖିଆଙ୍କ ମୁହଁରୁ ଶୁଣିବାକୁ ଚାହୁଁ । ଯଦି ସେ କୁହନ୍ତି ଏହା ସତ୍ୟ ତେବେ ତୁମ ଦୁହିଁଙ୍କୁ ଆମେ ବାଡ଼େଇ ଠିକ୍ କରିଦେବୁ ।" ଗ୍ରାମବାସୀମାନେ ଜୋର୍ ଦେଇ କହିଲେ ।

ଜୟ ବିଜୟ ଦୁହେଁ ଭୟରେ କମ୍ପି ଉଠିଲେ ଓ ଘର ଭିତରକୁ ଯାଇ ବାପାମାନଙ୍କୁ ପଚାରିଲେ, "ଯେତେହେଲେ ତ ତୁମେ ଆମର ପିତା । ରାଜଦ୍ୱୀପ ମହାବିଷ୍ଣୁ ବୋଲି ଜାଣିଲେ ସେମାନେ ଆମକୁ ମାରି ପକାଇବେ । ଏବେ ଆମ ଜୀବନ ରକ୍ଷା କରିବାର ଉପାୟ କର ।"

ଦୁଇ ମୁଖିଆ କ'ଣ କରିବେ କିଛି ଠିକ୍ କରି ନପାରି କହିଲେ, "ତୁମେ ଦୁହେଁ ଆମକୁ ବଡ଼ ଅଡୁଆ ପରିସ୍ଥିତିରେ ପକାଉଛ । ଏବେ ଆମକୁ ପ୍ରିୟମ୍ବଦା ସହିତ ଥରେ ଦେଖା କରାଇ ଦିଅ, ତେବେ କିଛି ଉପାୟ କରିବା ।"

ତା'ପରେ ଜୟ ବିଜୟ ଦୁଇ ମୁଖିଆଙ୍କୁ ପ୍ରିୟମ୍ବଦାଙ୍କ କୋଠରିକୁ ନେଇଗଲେ । ସେ କୋଠରି ପ୍ରଥମେ ଅନ୍ଧକାରରେ ପୂର୍ଣ୍ଣ ଥିଲ

ଓ ଗୋଟିଏ କଣରେ ବସି ପ୍ରିୟମ୍ବଦା କାନ୍ଦୁଥିଲେ । ଏସବୁ ଦେଖି ମୁଖିଆ ଦୁହିଁଙ୍କ ମନ ଶୁଖିଗଲା । ପ୍ରିୟମ୍ବଦା ଥରେ ମୁହିଁ ଉଠାଇ ସେମାନଙ୍କୁ ଦେଖିଲେ ଓ ତା'ପରେ ପୁଣି ମୁଣ୍ଡ ତଳକୁ କରି ବସି ରହିଲେ । ସେମାନେ ବୁଝିପାରିଲେ ମୂର୍ଖ ପୁଅ ଦୁହେଁ ପ୍ରିୟମ୍ବଦାଙ୍କୁ ମଧ୍ୟ ବହୁତ କଷ୍ଟ ଦେଇଛନ୍ତି ।

ମୁଖିଆ ଦୁହେଁ କହିଲେ, "ପ୍ରିୟମ୍ବଦା, ଝିଅ ତୁମକୁ ଆମେ ଏ କଷ୍ଟରୁ ଯେମିତି ହେଲେ ବଞ୍ଚାଇବୁ । ତମେ ଏଇ ଦୁଇ ମୂର୍ଖଙ୍କ ପାଇଁ ବହୁତ କଷ୍ଟ ସହିଲଣି ।"

ପ୍ରିୟମ୍ବଦା କୌଣସି ଉତ୍ତର ଦେଲେନାହିଁ ।

ଦୁଇ ମୁଖିଆ ସମସ୍ତ କଥା ମୂଳରୁ ଯେପରି ଘଟିଥିଲା ସବୁ ଖୋଲି ପ୍ରିୟମ୍ବଦାଙ୍କ ଆଗରେ କହିଲେ । ତା'ପରେ ସେମାନେ କହିଲେ, "ଝିଅ, ସେ ଦୁଇଜଣ ପିଲାଦିନରୁ ମୂର୍ଖ, ଦୁଷ୍ଟ ଓ ଲଦ୍‌ଖୋର୍‌ । କିନ୍ତୁ ତୁମ ଦୁଃଖ ଦେଖି ଆମେ ରଜଦୀପରୁ ମହାବିଷ୍ଣୁଙ୍କ ଅବତାର ବୋଲି ମଧ୍ୟ କହିବୁ ।"

"ମୋ ପାଖକୁ ଆପଣମାନେ କାହିଁକି ଆସିଛନ୍ତି ?" ବିରକ୍ତ ହୋଇ କହିଲେ ପ୍ରିୟମ୍ବଦା ।

"ତୁମର ରୂପ ଓ ଗୁଣ ଦେଖି ଆମର ମନେ ହେଲା କି ତମେ ସତରେ ଦେବୀ । ତୁମ ଭିତରେ ଅନେକ ଶକ୍ତି ଅଛି । ତମେ ଚାହିଁଲେ ଜୟ ବିଜୟଙ୍କୁ ମାରିଦେଇ ପାର । କିନ୍ତୁ ଆମେ ପୁଅ ଦୁହିଁଙ୍କୁ ହରାଇ କଷ୍ଟ ପାଇବୁ । ଯେତେ ମୂର୍ଖ ହେଲେ ପୁଅ ତ କ'ଣ କରାଯିବ । ତେଣୁ



ତମକୁ ଆମେ ଅନୁରୋଧ କରୁଛୁ ଏହାର ଏକ ଉପାୟ କର, ତେବେ ସେମାନେ ମଧ୍ୟ କିଛି ଶିଖିବେ ଅଥଚ ପ୍ରାଣହାନି ହେବ ନାହିଁ।" କହିଲେ ସାନ ମୁଖିଆ।

"ପିଲଙ୍କର ଦୁଷ୍ଟ ପ୍ରକୃତି ଥାଏ। କିନ୍ତୁ ତୁମେମାନେହିଁ ସେମାନଙ୍କର ଦୁର୍ଗୁଣ ବଢ଼ାଇବାରେ ଦାୟୀ। ଗ୍ରାମବାସୀମାନେ ମଧ୍ୟ ତୁମମାନଙ୍କ ଯୋଗୁ ବହୁ କଷ୍ଟ ପାଉଛନ୍ତି। ତମେମାନେ କେବେ ଚିନ୍ତା କରିଛ ଏହାର ପରିଣାମ କ'ଣ ହୋଇପାରେ ଏବେ ସବୁ କାମ କରିସାରିବା ପରେହିଁ ତମେ ଦୁହେଁ ମୋ ପାଖକୁ ଆସୁଛ ?" ପ୍ରିୟମ୍ବଦା କହିଲେ।

"ହିଁଅ, ଆମେ ସାଧାରଣ ଲୋକ। ବଡ଼ ବଡ଼ କଥା ବୁଝିବା ଆମ ପାଇଁ କଷ୍ଟକର। ତମେ ଏପରି କିଛି ଉପାୟ କର ଯେଉଁଥିରେ ତମେ ରାଜଦୀପକୁ ବିବାହ କରିବ ଓ ଆମ ପିଲଦୁହେଁ ମଧ୍ୟ ରକ୍ଷା ପାଇଯିବେ।" ମୁଖିଆମାନେ କହିଲେ।

ପ୍ରିୟମ୍ବଦା କହିଲେ, "ଧର ମୁଁ କିଛି ଉପାୟ ନ କରିବି ତେବେ ଆପଣମାନେ କ'ଣ କରିବେ ?"

"ଆମେମାନେ ଯେମିତି ହେଲେ ଗ୍ରାମବାସୀଙ୍କୁ କହିବୁ ଯେ ରାଜଦୀପ ମହାବିଷ୍ଣୁଙ୍କ ଅବତାର। ତା'ପରେ ପୁଅ ଦୁହେଁ ବିଷ ଖାଇ ଆତ୍ମହତ୍ୟା କରିବେ; ଅନ୍ତତଃ ସେଇଆ ସେମାନେ ଧମକ ଦେଇଛନ୍ତି। ତମେ ଚେଷ୍ଟାକଲେ ଦୁଇପଟ ରକ୍ଷା ପାଇଯା'ନ୍ତା।" ମୁଖିଆମାନେ କହିଲେ।





"ଆପଣମାନଙ୍କ ପୁଅଙ୍କର କୌଣସି କ୍ଷତି ହେବନାହିଁ ସେଥିପାଇଁ ମୁଁ ଏକ ଉପାୟ ଘଟିବ ରଖିଛି ।" ପ୍ରିୟମ୍ବଦା କହିଲେ । ତା'ପରେ ସେ ଧୀର ସ୍ୱରରେ ଦୁଇ ମୁଖିଆଙ୍କୁ କିଛି କହିଲେ । ସେମାନେ ସବୁକଥା ଶୁଣି ଖୁସି ମନରେ ସେଠାରୁ ବାହାରକୁ ଆସିଲେ ।

ଘର ସାମନାରେ ଗ୍ରାମବାସୀମାନେ ଭିଡ଼ କରିଥା'ନ୍ତି । ସେମାନଙ୍କ ମଧ୍ୟରେ ବସିଥା'ନ୍ତି ରାଜଦୀପ ଓ ଜୟ ବିଜୟ । ଜୟ ହାତରେ ଧରିଥାଏ ବିଷ ପୁଡ଼ିଆ । ସମସ୍ତେ ପ୍ରତୀକ୍ଷା କରି ରହିଥା'ନ୍ତି ମୁଖିଆମାନେ କ'ଣ କହିବେ ।

ବଡ଼ ମୁଖିଆ ଆରମ୍ଭ କଲେ, "ଭାଇମାନେ, ଆମ ଗ୍ରାମରେ ରହିଥିବା ରାଜଦୀପ ବିଭିନ୍ନ ପ୍ରକାରେ ଆମକୁ ସାହାଯ୍ୟ କରିଛନ୍ତି । ତାଙ୍କ ମଧ୍ୟରେ ମହାବିଷ୍ଣୁଙ୍କର ଲକ୍ଷଣ ସବୁ ପୂର୍ଣ୍ଣ ହୋଇଅଛି । କିନ୍ତୁ ଏତେ ସହଜରେ ତ ଆମେ ତାଙ୍କୁ ମହାବିଷ୍ଣୁ ବୋଲି ମାନି ନେବାନାହିଁ । କିଛି ଅଲୌକିକ ଘଟଣା ଦେଖିଲେ ମାନିନେବା । ସେଥିପାଇଁ ଏକ ପରୀକ୍ଷା କିଆଯିବ । ଆମେ ଠିକ୍ କରିଛୁ କି ନିକଟସ୍ଥ ଜଙ୍ଗଲକୁ ଆମେମାନେ ରାଜଦୀପ ଓ ପ୍ରିୟମ୍ବଦାଙ୍କୁ ନେଇଯିବା । ସେମାନଙ୍କୁ ଏକ ବିଶେଷ ସ୍ଥାନରେ ଠିଆ କରାଇ ଆମେମାନେ ସେଠାରୁ ଏକହଜାର ଗଜ ଦୂରରେ ଥାଇ ଦେଖିବା । ସର୍ତ୍ତ ହେଉଛି ସେମାନେ ଯଦି ଭଗବାନଙ୍କର ଅଂଶ ନେଇ ଜନ୍ମ ହୋଇଥା'ନ୍ତି ତେବେ ସେଠାରୁ ସେମାନେ ଅଦୃଶ୍ୟ ହୋଇଯିବେ । ଯଦି ନ ହେବେ ତେବେ ରାଜଦୀପ ଆମ ଗ୍ରାମ ଛାଡ଼ି ଚାଲିଯିବ ଓ ପ୍ରିୟମ୍ବଦା ଜୟ ବିଜୟଙ୍କୁ ବିବାହ କରିବ ।"

ମୁଖିଆଙ୍କର ଏ ଯୋଜନାକୁ ଜୟ ବିଜୟ, ତଥା ଗ୍ରାମବାସୀମାନେ ଖୁବ୍ ପସନ୍ଦ କଲେ ।

ପ୍ରିୟମ୍ବଦା ଜାଣିଥିଲେ ଯେ ପୂର୍ବନିର୍ଦ୍ଧାରିତ ସ୍ଥାନ ହେଉଛି ଗଛର କୋରଡ଼ ଯାହା ଭିତରେ ପଶି ସେମାନେ ରାଜମହଲକୁ ଯାଇଥିବା ସୁଡ଼ଙ୍ଗରେ ପ୍ରବେଶ କରିବେ । ସେଥିରେ ଯିବା ପାଇଁ ଅନେକ ସମୟ ଲାଗିବ । ତେଣୁ ପ୍ରିୟମ୍ବଦା କହିଲେ, "ଭାଇମାନେ, ମୁଁ ଜାଣେ ରାଜଦୀପ ମହାବିଷ୍ଣୁ । କିନ୍ତୁ ଆମେ ଏଠାରୁ ଅଦୃଶ୍ୟ ହୋଇଯିବା ପରେ ଆକାଶମାର୍ଗରେ

କିଛିଦିନ ବୁଲିବୁ । ସେଥିପାଇଁ କିଛି ଖାଦ୍ୟ ଓ ପାନୀୟ ଆମର ଦରକାର ।"

ଗ୍ରାମବାସୀମାନେ ଅତି ଖୁସିରେ ପ୍ରିୟମ୍ବଦାଙ୍କୁ ଖାଦ୍ୟ ପଦାର୍ଥ ସବୁ ଦେଲେ । ଜୟ ବିଜୟ ଭାବିଲେ ଏ ପରୀକ୍ଷାରେ ଏମାନେ ହାରିଯିବେ କାରଣ ମଣିଷ କ'ଣ ଅଦୃଶ୍ୟ ହୋଇପାରେ । ଶେଷକୁ ପ୍ରିୟମ୍ବଦା ଆମକୁହିଁ ମିଳିବ ।

ପୂର୍ବ ନିର୍ଦ୍ଧାରିତ ସର୍ତ୍ତ ଅନୁସାରେ ସମସ୍ତେ ବଣରେ ଏକତ୍ରିତ ହେଲେ । ପ୍ରିୟମ୍ବଦା ଓ ରାଜଦୀପ ସେହି ସ୍ଥାନରେ ରହିଲେ । ଗ୍ରାମ-ବାସୀମାନେ ଏକହଜାର ଗଜ ଦୂରକୁ ଯିବା ପୂର୍ବରୁ ରାଜଦୀପ କହିଲା, "ମୋର ପ୍ରିୟ ଗ୍ରାମବାସୀଗଣ । ଏବେ ଆପଣମାନେ ହଜାର ଗଜ ଦୂରକୁ ଯାଇ ଏକଶହ ଗଣିବେ । ତା'ପରେ ଆପଣମାନେ ଆମକୁ ଆଉ ଦେଖିବାକୁ ପାଇବେ ନାହିଁ । ଆଜିଠାରୁ ମୁଁ ଆଉ ଆପଣମାନଙ୍କ ସହିତ ରହି ପାରିବ ନାହିଁ । ସେଥିପାଇଁ କିଛି କଥା କହୁଛି ମନେ ରଖିବେ । ଜନତାର ଶକ୍ତି ରାଜଶକ୍ତିଠାରୁ ବଡ଼ । ଯଦି କେହି ତୁମ ଉପରେ ଅନ୍ୟାୟ କରେ ତେବେ ତାକୁ ବନ୍ଦ କରିବାକୁ ଚେଷ୍ଟା କରିବେ ସାହସର ସହିତ । ଜୟ ବିଜୟ ତୁମଠାରୁ ଅଧିକ ଶକ୍ତିଶାଳୀ ନୁହଁନ୍ତି । ତାଙ୍କ ଭିତରେ ଯେଉଁ ରାକ୍ଷସ ଶକ୍ତି ଥିଲା ସେସବୁ ଆମେ ଆମ ସହିତ ନେଇ ଯାଉଛୁ । ଏହି ଦୁଇ ମୁଖିଆ ଏବେ ଆପଣମାନଙ୍କ ସହିତ ପିତୃତୁଲ୍ୟ ବ୍ୟବହାର କରିବେ । ଏବେ ଆମେ ବିଦାୟ ନେଉଛୁ ।"

ସମସ୍ତ ଗ୍ରାମବାସୀ ଏକହଜାର ଗଜ ଦୂରରେ ଛିଡ଼ା ହେଲେ । ଏବେ ଶହେ ଗଣିବା ପୂର୍ବରୁହିଁ ରାଜଦୀପ ଓ ପ୍ରିୟମ୍ବଦା ଆଖି ଆଗରୁ ଅନ୍ତର୍ହିତ ହୋଇଗଲେ ।

ପ୍ରିୟମ୍ବଦା ରାଜଦୀପକୁ ରାସ୍ତା ଦେଖାଇଲେ । ସେମାନେ ବୃକ୍ଷର କୋରଡ଼ ଭିତର ଦେଇ ଯାଇ ସୁଡ଼ଙ୍ଗରେ ପ୍ରବେଶ କରି ଭିତର ପଟୁ ଦ୍ୱାର ବନ୍ଦ କରିଦେଲେ ।

(ଆସନ୍ତା ସଖ୍ୟାରେ ସମାପ୍ତ)



# ପ୍ରହରୀ ପାଇଁ ପ୍ରାର୍ଥୀ

ପୁଷ୍ପପୁରର ଜମିଦାର ଅଶୋକ ସିଂହ ନିଜର ସେବକମାନଙ୍କୁ ନିଯୁକ୍ତ କରୁଥା'ନ୍ତି ବହୁ ପ୍ରକାର ପରୀକ୍ଷା ନିରୀକ୍ଷା ପରେ । ଥରେ ତାଙ୍କ କଚେରୀ ପାଇଁ ଜଣେ ପ୍ରହରୀର ଆବଶ୍ୟକତା ପଡ଼ିଲା । ସେଥିପାଇଁ ଦୁଇଜଣ ଯୁବକ ପ୍ରାର୍ଥୀ ଥା'ନ୍ତି, ଆନନ୍ଦ ଓ ସୁଦାସ ।

ଜମିଦାର ପ୍ରଥମେ ଆନନ୍ଦକୁ ଗୋଟିଏ ରାତି ପ୍ରହରୀ କାମରେ ନିଯୁକ୍ତ କଲେ । ତା' ପରଦିନ ତାକୁ ବଗିଚା କାମ ଦେଲେ ସେ ବଗିଚା କାମ ଖୁବ୍ ତତ୍ପରତାର ସହିତ କଲା । ତା'ପରେ ଜମିଦାର କହିଲେ ତିନିଦିନ ପରେ ସେ ଯାହା କହିବାର କହିବେ ।

ସୁଦାସକୁ ମଧ୍ୟ ସେହିଭଳି କାମ ଦେଲେ । ହେଲେ ଦ୍ୱିତୀୟ ଦିନ ସୁଦାସକୁ ବଗିଚା କାମ ଦେବାରୁ ସେ ଟିକିଏ ଅତମତ ହେଲା, ଭଲ ଭାବରେ କାମଟି କରିପାରିଲା ନାହିଁ ।

ଜମିଦାର ପ୍ରହରୀ ପଦଟି ସୁଦାସକୁହିଁ ଦେଲେ । ସେ ତାଙ୍କର ପାଖ ଲୋକଙ୍କୁ କହିଲେ, "ଆନନ୍ଦ ଭଲପିଲା ହେଲେ ମଧ୍ୟ ପ୍ରହରୀ ପଦପାଇଁ ଯୋଗ୍ୟ ନୁହେଁ । ସେ ମୋତେ ଖୁସି କରିବା ପାଇଁ ବଗିଚା କାମ କରିଦେଲା ଆଉ ପହରା ଦେବାବେଳେ ରାତିରେ ବସି ଘୁମାଇବ । ତେଣୁ ମୁଁ ସୁଦାସକୁ ବାଛିଲି । ମୁଁ ପ୍ରହରୀ କାମ ପାଇଁ ପ୍ରହରୀ ଚାହେଁ, ମାଳୀ ନୁହେଁ ।"





# ଯୋଗ୍ୟ ପୁତ୍ର

ରାଧାନଗରର ସୁଦର୍ଶନ ପଟେଲ ଥିଲା ଜଣେ ବଡ଼ ଲୋଭୀ ବ୍ୟକ୍ତି । ତା' ସ୍ତ୍ରୀ ସୁନ୍ଦରୀ ମଧ୍ୟ ସେ ଦିଗରେ ସ୍ୱାମୀର ପ୍ରକୃତ ସହଧର୍ମିଣୀ । ଦୁଇଜଣଙ୍କର କାମ ହେଲା ଧନ ସଂଗ୍ରହ କରିବା । ତା'ଛଡ଼ା ପୃଥିବୀରେ ଆଉ କୌଣସି କଥା ସେମାନେ ଜାଣନ୍ତି ନାହିଁ ।

ସାରା ଗ୍ରାମରେ ସୁଦର୍ଶନର କାମ ହେଲା ଦୁଇ ପରିବାର ମଧ୍ୟରେ ଝଗଡ଼ା କରାଇବା ଓ ସେମାନଙ୍କୁ ମକଦ୍ଦମାରେ ଠିଆ କରାଇବା । ମକଦ୍ଦମା ପାଇଁ ହସ୍ତଖତ ବା ଟିପଚିହ୍ନ ଦେଇ ନିଜେ ପଇସା ଧାର ଦିଏ, ସୁଧମୂଳ ମିଶାଇ ତିନିଗୁଣ କରି ଆଦାୟ କରେ । ସୁନ୍ଦରୀ ମଧ୍ୟ ଗ୍ରାମର ଗରିବ ସ୍ତ୍ରୀଲୋକମାନଙ୍କ ବିପଦ ବେଳେ କଂସା ବାସନ ବା ସୁନା ରୁପା ବନ୍ଧା ରଖି ପଇସା ଦେଇଥାଏ, ସେମାନେ ଠିକ୍ ସମୟରେ ନ ଆସିଲେ ଆଉ ସେ ଜିନିଷ ଫେରାଏ ନାହିଁ ।

ଦୁଇଜଣଙ୍କ ବିବାହର ପଚିଶ ବର୍ଷ ପରେ ତାଙ୍କର ପୁଅଟିଏ ଜନ୍ମ ହୋଇଥିବାରୁ ସେମାନେ ବହୁତ ଖୁସି ହେଲେ । ବନ୍ଧୁବାନ୍ଧବ, ଓ ଗ୍ରାମର ଅନ୍ୟାନ୍ୟ ଲୋକମାନେ କହିଲେ, "ଏତେଦିନରେ ପିଲାଟିଏ ହୋଇଛି । ଭଲକରି ନାମକରଣ ଉତ୍ସବ କର । ହାତ ଖୋଲି ପଇସା ଖର୍ଚ୍ଚ କରି ସମସ୍ତଙ୍କୁ ମିଠା ଖୁଆଅ ।

ତା'ପରେ ସ୍ୱାମୀ ସ୍ତ୍ରୀ ଦୁହେଁ ଏ ବିଷୟରେ ବହୁତ ଚିନ୍ତା କଲେ ଓ ନାନା ପ୍ରକାର ଭାବରେ ଆଲୋଚନା କଲେ । ଶେଷକୁ ଏଇକଥା ଠିକ୍ ହେଲା ଯେ ଏକା ଦିନରେ ସ୍ୱାମୀ ସ୍ତ୍ରୀଙ୍କର ବିବାହର ରଜତ ଜୟନ୍ତୀ ମଧ୍ୟ ହେବ ଓ ପୁଅର ନାମକରଣ ଉତ୍ସବ ମଧ୍ୟ ହେବ । ତା'ହେଲେ ଖର୍ଚ୍ଚ ତୁଳନାରେ ଉପହାର ବେଶି ମିଳିବ । ସୁଦର୍ଶନ ନିଜର ଯୋଜନା ଅନୁଯାୟୀ ଗ୍ରାମବାସୀଙ୍କୁ ନିମନ୍ତ୍ରଣ କଲା । ସେମାନେ

ଉତ୍ସବ ଦିନ ଯାହା ଅଳ୍ପ ବହୁତ ଉପହାର ଆଣିଥା'ନ୍ତି ତାହା କେବଳ ପୁଅ ପାଇଁ । ବେଶ୍ ଧୁମ୍‌ଧାମ୍‌ରେ ଉତ୍ସବ ଶେଷ ହେଲା ।

ସମସ୍ତେ ଚାଲିଯିବା ପରେ ଘରରେ ସ୍ୱାମୀ ସ୍ତ୍ରୀ ବସି ଉପହାର ସବୁ ସଜାଡ଼ିଲେ, "ତା'ପରେ ହିସାବ କଲେ ଭୋଜିରେ ଯେତେ ଖର୍ଚ୍ଚ ହୋଇଛି ତା'ଠାରୁ କିଛି ଅଧିକା ପଇସା ମିଳିଛି । ଦୁହେଁ ଖୁସି ହେଲେ । ହଠାତ୍ ସୁଦର୍ଶନ ପୁଅର ଗୋଟି ମୁଦି ଗୁଡ଼ିକ ନେଇ କଷଟି ପଥରରେ ଗାର ପକାଇ ସୁନା କି ନୁହଁ ପରୀକ୍ଷା କରି ଦେଖିଲା । ଗାର କାଠୁ କାଠୁ ଚିତ୍କାର କରି କହିଲା, "ଆରେ ସୁନ୍ଦରୀ, ଆମକୁ ସେମାନେ ପିତ୍ତଳ ମୁଦି ସୁନାପାଣି ଦେଇ ଠକି ଦେଇଛନ୍ତି ।" ସେ ରାଗିଯାଇ କହିଲା, "ବଦମାସ୍‌ମାନେ ଖାଇବା ବେଳେ ପେଟ ଠୁସି ଖାଇବେ, ଆଉ ଦେବାବେଳେ ପିତ୍ତଳ ମୁଦି ଦେବେ ।"

"ହାୟ, ହାୟ ଏମିତି ଠକିଦେଲେ"— କହି ସୁନ୍ଦରୀ ମଧ୍ୟ ଦୁଃଖ ପ୍ରକାଶ କଲା । ତା'ପରେ ହଠାତ୍ ସେ ଘର ଭିତରକୁ ଦୌଡ଼ିଯାଇ ପୁଣି କିଛି ସମୟ ପରେ ଫେରି ଆସି କହିଲା, "ଖାଲି ସେତିକି ନୁହେଁ । ଖାଇବା ପରେ ମୋ ପାଖରେ ବନ୍ଧା ରଖିଥିବା ସେମାନଙ୍କ ବାସନ ସବୁ ମଧ୍ୟ ଉଠେଇ ନେଇଛନ୍ତି ।"

ଏବେ ସ୍ୱାମୀ ସ୍ତ୍ରୀ ଦୁହେଁ ବସି ନିଜ ଭାଗ୍ୟକୁ ନିନ୍ଦା କରୁଥିବା ବେଳେ ପୁଅ କାନ୍ଦିଲା । ସୁନ୍ଦରୀ ପୁଅକୁ କୋଳକୁ ନେଲା । ଦେଖିଲା ତା' ହାତମୁଠା ଜୋର୍‌ରେ ବନ୍ଦ ହୋଇଛି । ଖୋଲି ଦେଖେ ତ ଦୁଇଟା ସୁନାର ପତଳା ହାର କାହା ବେକରୁ ଛିଣ୍ଡାଇ ଧରିଛି । ସେ ସୁଦର୍ଶନକୁ ଡାକିଲା । ଦୁହେଁ ପୁଅର କରାମତି ଦେଖି ଆନନ୍ଦରେ ଗଦ୍‌ଗଦ୍ ହୋଇ ଉଠିଲେ । ସୁଦର୍ଶନ ଖୁସି ହୋଇ କହି ଉଠିଲା, "ସୁନ୍ଦରୀ, ଯାହା ଆମେ ଦୁହେଁ କରି ପାରି ନଥିଲେ, ତାହା ଆମ ପୁଅ କରି ଦେଖାଇ ଦେଲା । ପ୍ରକୃତରେ ସେ ଆମର ଯୋଗ୍ୟ ଉତ୍ତରାଧିକାରୀ ।"



ଉତ୍ତର ଓ ଦକ୍ଷିଣ ମେରୁ ପ୍ରଦେଶରେ ଏକ ପ୍ରକାର ଜ୍ୟୋତି ଆକାଶରେ ଦେଖାଦିଏ । ସୂର୍ଯ୍ୟଙ୍କଠାରୁ ପ୍ରସାରିତ ହେଉଥିବା ବିଦ୍ୟୁତ୍‌କଣା ଯେତେବେଳେ ପୃଥିବୀର ଚୁମ୍ବକ କ୍ଷେତ୍ରରେ ମିଳିତ ହୁଏ, ସେତେବେଳେ ସେଥିରୁ କିରଣମାଳା ନିର୍ଗତ ହୁଏ । ଏହାକୁ ଅରୋରା ବୋରିଆଲିସ୍ ଓ ଅରୋରା ଅଷ୍ଟ୍ରାଲିସ୍ ବୋଲି କୁହାଯାଏ ।



ମେରୁ ପ୍ରଦେଶର ଜ୍ୟୋତି



## ଶୀତଳ ଭାଲୁ

ଅଷ୍ଟ୍ରେଲିଆରେ କୋଆଲାଜାତୀୟ ଭାଲୁମାନେ ଗ୍ରୀଷ୍ମକାଳରେ ନିଜ ମୁହଁରୁ ବାହାରୁଥିବା ଲାଳକୁ ଦେହରେ ଘଷି ଗରମରୁ ନିଜକୁ ରକ୍ଷା କରନ୍ତି ।

## ମରୁଭୂମିର ବର୍ଷା

ମରୁଭୂମିରେ ବେଳବେଳେ ବର୍ଷା ହେଉଥାଏ କିନ୍ତୁ ଜଳବିନ୍ଦୁ ନିମ୍ନକୁ ଆସିବା ବେଳେ ବାୟୁର ଅତ୍ୟଧିକ ଉଷ୍ଣତା ଯୋଗୁ, ତାହା ଭୂମିରେ ପହଞ୍ଚିବା ପୂର୍ବରୁହିଁ ବାଷ୍ପ ହୋଇ ଉଡ଼ିଯାଏ ।



# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାଳ ସହିତ ନୂତନ କାହାଣୀମାଳର ଅପୂର୍ବ ସମନ୍ୱୟ ।
* ସରଳ ଓ ସଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ ।
* ହାସ୍ୟରସ ସହ ମାନବିକତା ଓ ନୀତିଶିକ୍ଷାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ ।
* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି ।
* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ ।
* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୁରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :

## ଡଲ୍‌ଟନ୍ ଏଜେନ୍‌ସିଜ୍

ଚନ୍ଦାମାମା ବିଲ୍‌ଡିଂସ୍,

ବଡପଲନୀ, ମାଡ୍ରାସ-୬୦୦୦୨୬

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଡିସେମ୍ବର ୧୯୮୬ ସଂଖ୍ୟାରେ ପ୍ରକାଶ ପାଇବ



Madan Gopal



P. S. Girota

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଅକ୍ଟୋବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଅଗଷ୍ଟ '୮୬ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଚାଷ ନାହିଁ, ବେଶ ନାହିଁ, ଅଛି ମୁଖେ ହସ !
ଦ୍ୱିତୀୟ ଚିତ୍ର : ଧରୁ ଥାଇ, ବାବା ତୋର କମ୍ପା ଏତେ ରୋଷ !!
ପୁରସ୍କାର ବିଜୟୀ : ଲିଙ୍ଗରାଜ ଦାଶ, ଭୁବନେଶ୍ୱର ।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦
ମନିଅର୍ଡର ପଠାଇବା ଠିକଣା :
ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଂସ୍, ବଡ଼ପଳନୀ, ମାଡ୍ରାସ-୬୦୦୦୨୬
ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :
ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍ଡିଂସ୍, ବଡପଳନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.


---


CHANDAMAMA